ପ୍ରାତଃ ସ୍ମରଣୀୟ ପରମ ପୂଜ୍ୟ

ସନ୍ତ ଶ୍ରୀ ଆସାରାମଜୀ ବାପୁଙ୍କ ସତ୍‌ସଙ୍ଗ-ପ୍ରବଚନ

# ଇଷ୍ଟସିଦ୍ଧି

## ISHTASIDDHI (Oriya)

ଭାଷାନ୍ତର : ସ୍ନେହଲତା ତ୍ରିପାଠୀ, ସୁରେନ୍ଦ୍ର ମହାରଣା,

ଅଶୋକ କୁମାର ମହାନ୍ତ

ଶ୍ରୀ ଯୋଗ ବେଦାନ୍ତ ସେବା ସମିତି

ସନ୍ତ ଶ୍ରୀ ଆସାରାମଜୀ ଆଶ୍ରମ

ସନ୍ତ ଶ୍ରୀ ଆସାରାମଜୀ ବାପୁ ଆଶ୍ରମ ମାର୍ଗ, ଅହମଦାବାଦ-୩୮୦୦୦୫

ଫୋନ: (୦୭୯) ୨୭୫୦୫୦୧୦-୧୧

ସନ୍ତ ଶ୍ରୀ ଆସାରାମଜୀ ବାପୁ ଆଶ୍ରମ ରୋଡ଼, ଜହାଙ୍ଗୀରପୁରା, ସୁରତ - ୫

ଫୋନ: (୦୨୬୧) ୨୭୭୨୨୦୧-୨୭୭୨୨୦୨

ବନ୍ଦେ ମାତରମ୍ ରୋଡ଼, ରବୀନ୍ଦ୍ର ରଙ୍ଗଶାଳାର ସମ୍ମୁଖ, ନୂଆଦିଲ୍ଲୀ-୬୦ ।

ଫୋନ: (୦୧୧) ୨୫୭୨୯୩୩୮, ୨୫୭୬୪୧୬୧

ସନ୍ତଶ୍ରୀ ଆସାରାମଜୀ ସତ୍‌ସାହିତ୍ୟ କେନ୍ଦ୍ର, ଗାନ୍ଧି ଛକ, ଅନୁଗୁଳ

ଫୋନ: (୦୬୭୬୪) ୨୩୦୫୨୧, ୨୩୧୯୨୮

---

Rs. 4.00

# ପ୍ରସ୍ତାବନା

ଆଧୁନିକ ଯୁଗର ଆତ୍ମଜ୍ଞାନୀ, ଭକ୍ତି ଓ ଯୋଗାଦି ବିଭିନ୍ନ ମାର୍ଗରେ ପ୍ରସିଦ୍ଧି ଲାଭ କରିଥିବା ପରମ ପୂଜ୍ୟ ସ୍ୱାମୀଜୀଙ୍କ ଅନୁଭବ-ସମ୍ପନ୍ନ ବୈଦିକ ବାଣୀକୁ, ଋଷିପ୍ରସାଦକୁ ସାଧକ ସହଜରେ ହୃଦୟଙ୍ଗମ କରିପାରିବେ ଏବଂ ନିଜ ଜୀବନକୁ ପ୍ରତ୍ୟେକ କ୍ଷେତ୍ରରେ ସମୁଜ୍ଜ୍ୱଳ କରିପାରିବେ, ସେହି ମହତ ଉଦ୍ଦେଶ୍ୟ ରଖି ମନ୍ତ୍ରାନୁଷ୍ଠାନ ବିଷୟକ ଏହି **'ଇଷ୍ଟସିଦ୍ଧି'**ର ପ୍ରକାଶନ କରାଯାଇଛି ।

ମାନସିକ ତଥା ବୌଦ୍ଧିକ ବଳକୁ ବିକାଶ କରି ନିଜ ଜୀବନକୁ ସବୁ ଦିନ ପାଇଁ ଶାଶ୍ୱତ ସୁଖରେ, ଶାଶ୍ୱତ ଶାନ୍ତିରେ, ଜୀବନମୁକ୍ତିର ଅପୂର୍ବ ଆନନ୍ଦରେ ନିମଜ୍ଜିତ କରିବା ପାଇଁ ଇଚ୍ଛୁକ ସାଧକଙ୍କ କର କମଳରେ ସନ୍ଥପ୍ରସାଦ ଅର୍ପଣ କରିବାକୁ ଯାଇ ସମିତି କେତେକାଂଶରେ ଋଣମୁକ୍ତ ହୋଇଛି ।

*—ଶ୍ରୀ ଯୋଗ ବେଦାନ୍ତ ସେବା ସମିତି*

## ସାଧନାର ସୋପାନ

# ଇଷ୍ଟସିଦ୍ଧି

ଆମର ଖାଇବା ପାଇଁ ପର୍ଯ୍ୟାପ୍ତ ଅନ୍ନ, ପରିଧାନ ପାଇଁ ବସ୍ତ୍ର ଏବଂ ବାସ କରିବା ପାଇଁ ଗୃହ ଥିବା ସତ୍ତ୍ୱେ ଆମ ଭିତରେ ଏତେ ଦୁଃଖ କାହିଁକି ? ଏହି ଦୀନତା କେଉଁ କାରଣରୁ ? ଅଶାନ୍ତି କେଉଁଥି ପାଇଁ ? ଏହାର କାରଣ ହେଉଛି ଆମେ ନିଜ ଅନ୍ତଶ୍ଚେତନାକୁ କିପରି ଜାଗ୍ରତ କରିବାକୁ ହୁଏ ତା'ର ଉପାୟ ଭୁଲି ଯାଇଛୁ । ଅନ୍ତର୍ନିହିତ ଆନନ୍ଦ ସାଗର ସହ ସମ୍ପର୍କ ହରାଇ ବସିଛୁ । ପରମାତ୍ମାନୁସନ୍ଧାନ କରିବାର ସମ୍ପର୍କ ସୂତ୍ରକୁ ହାତଛଡ଼ା କରିଦେଇଛୁ । ମନ୍ତ୍ରଜପ ଏବଂ ତାର ବିଧି-ବିଧାନ ତ୍ୟାଗ କରିଦେଇଛୁ । ଦିନକୁ ଦିନ ପାଶ୍ଚାତ୍ୟ ଜଗତର ଦେଖାଣିଆ ଚାକଚକ୍ୟରେ ଆମେ ପ୍ରଭାବିତ ହେବାରେ ଲାଗିଛୁ । ଫଳରେ ସେମାନେ ଭୌତିକ ସାଧନ ସମ୍ପନ୍ନ ହୋଇଥିବା ସତ୍ତ୍ୱେ ଯେପରି ଅଶାନ୍ତ ହେଉଛନ୍ତି ସେପରି ଆମର ଜୀବନ ମଧ୍ୟ ଅଶାନ୍ତ ଗହ୍ୱର ଦିଗକୁ ଟାଣି ହୋଇ ଯାଉଛି ।

ଏପରି ଦିନ ଥିଲା ଯେତେବେଳେ ଆମ ପରିବାରରେ ମାତ୍ର ଜଣେ ବ୍ୟକ୍ତି ରୋଜଗାର କରୁଥିଲା, ଅଥଚ ଶହେ ଜଣ ବେଶ୍ ଆନନ୍ଦରେ ଖାଇ ପିଇ ବଞ୍ଚୁଥିଲେ । ଶାନ୍ତିରେ ଜୀବନ କଟାଉଥିଲେ । କେବଳ କୌପୀନ ପରିଧାନ କରି ମଧ୍ୟ ତ୍ୟାଗୀ ପୁରୁଷ ନିଶ୍ଚିନ୍ତ ଜୀବନ ଯାପନ କରୁଥିଲେ । କିନ୍ତୁ ଆଜି ଆମେ କୋଟ୍, ପ୍ୟାଣ୍ଟ, ସୁଟ୍, ବୁଟ୍, ଟାଇ ଆଦି ପରିଧାନ କରି ସମସ୍ତ ଥାଟବାଟରେ ରହି ସୁଦ୍ଧା ଅନ୍ତରରେ ଅଶାନ୍ତ ଅନଳରେ ଆମ ହୃଦୟ ଦଗ୍ଧୀଭୂତ ହେଉଅଛି । ଆମର ଚିତ୍ତ-ପ୍ରଶାନ୍ତି ଏବଂ ଆତ୍ମ-ବିଶ୍ରାନ୍ତି ହଜିଯାଇଛି ।

## ବିବେକର ଜାଗରଣ

ସୌଭାଗ୍ୟବଶତଃ ଯେତେବେଳେ ଆମେ କୌଣସି ସତ୍ୟନିଷ୍ଠ ମହାପୁରୁଷଙ୍କ ସାନ୍ନିଧ୍ୟରେ ଆସୁ, ସତ୍‌ସଙ୍ଗ ହେତୁ ତାଙ୍କ ଠାରୁ ବ୍ରହ୍ମାନନ୍ଦଦାୟିନୀ ଅମୃତ ବଚନ ଶୁଣିବାର ସୌଭାଗ୍ୟ ଲାଭ କରୁ, ସେତେବେଳେ ଆମେ ଧ୍ୟାନାମୃତରେ ସତେ ଯେପରି ଆମ ଜୀବନର ଅନ୍ତରତମ ଦେଶରେ ଅବଗାହନ

କରୁ ଏବଂ ଅନୁଭବ କରୁ ଭଗବାନ ଆମର ଅତି ନିକଟବର୍ତ୍ତୀ ହୋଇଛନ୍ତି । ତତ୍ତ୍ୱବେତ୍ତା ସଦ୍‌ଗୁରୁଙ୍କ କୃପା ପ୍ରସାଦ ଲାଭ କରି ଜୀବନକୁ ମହାନ୍ କରି ଗଢ଼ି ତୋଳିବା ଅତି କଠିନ ବ୍ୟାପାର ନୁହେଁ ବୋଲି ସେହି ସମୟରେ ବିଶ୍ୱାସ କରୁ । ହଜାଇଥିବା ଜୀବନର ମହାନ୍ ସମ୍ପତ୍ତିକୁ ପୁଣି ଫେରି ପାଇବାର ଉଜ୍ଜ୍ୱଳ ଆଶା ଦେଖୁ । କିନ୍ତୁ ଏହି ଦିବ୍ୟ ଭାବ ବହୁ ସମୟ ବଞ୍ଚି ରହେ ନାହିଁ । ଚିତ୍ତ ପୁନର୍ବାର ପୁରୁଣା ସଂସ୍କାରରେ ଭାସି ଚାଲେ । କେତେ ପ୍ରକାରର ବାଧା ବିଘ୍ନ ଆସି ଆମ ଜୀବନକୁ ପୁଣି ସନ୍ତପ୍ତ କରାଏ ।

## ମନୁଷ୍ୟର ଦ୍ୱିଧା

ଗୋଟିଏ ପକ୍ଷରେ ମନ ଚାହେଁ ଯେ ମନୁଷ୍ୟ ଜନ୍ମ ଅତି ଦୁର୍ଲଭ । ଏଣୁ ଏହି ଦୁର୍ଲଭ ଜୀବନକୁ ସଦୁପଯୋଗ କରି ଦୁନିଆଁରେ ମୁଁ ଏପରି କିଛି କାମ କରିଯିବି ଯାହା ଜନ ସମୁଦାୟ ପାଇଁ ଜୀବନର ଚଲାବାଟ ହୋଇ ରହିବ । ପୁଣି ଅନ୍ୟ ପକ୍ଷରେ ସେହି ମନ ଜଗତ ପ୍ରତି, ଜାଗତିକ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଏବଂ ଶରୀରର ଭୋଗ ବିଳାସ ପ୍ରତି ଆକୃଷ୍ଟ ହୋଇଯାଏ ।

ଏହିପରି ଦ୍ୱିଧାପୂର୍ଣ୍ଣ ଜୀବନରେ କ'ଣ କରାଯାଇପାରିବ ? ଗୋଟିଏ ଦିଗରେ ଶ୍ରେୟ ଚାହୁଁଥିବା ବେଳେ ଅନ୍ୟ ଦିଗରେ ପ୍ରେୟ ଆମକୁ ଓଟାରି ନିଏ । ଏଣୁ ଜୀବନରେ ପୂରା ଶ୍ରେୟ ମାର୍ଗରେ ଗତି କରି ହୁଏ ନାହିଁ କି ପ୍ରେୟ ମାର୍ଗରେ ଗତି କରି ଜୀବନକୁ ଉପଭୋଗ କରି ହୁଏ ନାହିଁ । ସଂସାରରେ ରହି ନା ଆମେ ସଜ୍ଜନ ହୋଇ ପାରୁଛୁ, ଈଶ୍ୱରୀୟ ଶାନ୍ତି, ଚିତ୍ତର ପ୍ରଶାନ୍ତି, ଆତ୍ମ-ବିଶ୍ରାନ୍ତି ଲାଭ କରୁଛୁ, ନା ସଇତାନ ହୋଇ ଜୀବନରେ ତୃପ୍ତି ଲାଭ କରି ପାରୁଛୁ ? ସାଧକ ଓ ଭକ୍ତଙ୍କର ଏହିପରି ଅନୁଭୂତି ରହିଛି । ଏହାର କାରଣ କ'ଣ ହୋଇପାରେ ?

ଆମେ ମଙ୍ଗଳ ଚାହୁଁ, କିନ୍ତୁ ମଙ୍ଗଳ ମାର୍ଗକୁ ପୂରାପୂରା ଅନୁସରଣ କରି ପାରୁ ନାହୁଁ । ଅମଙ୍ଗଳ ମାର୍ଗରୁ ଦୂରେଇବାକୁ ଇଚ୍ଛା କରୁ, କିନ୍ତୁ ମନ୍ଦ କବଳରୁ ପୂର୍ଣ୍ଣମାତ୍ରାରେ ନିଜକୁ ରକ୍ଷା କରିବାରେ ଅସମର୍ଥ ହେଉ । ଆମର ସ୍ଥିତି ଠିକ୍ ଏହିପରି :

**ଜାନାମି ଧର୍ମଂ ନ ଚ ମେ ପ୍ରବୃତ୍ତିଃ ଜାନାମ୍ୟଧର୍ମଂ ନ ଚମେ ନିବୃତ୍ତିଃ ।**

ଅର୍ଥାତ୍- ଧର୍ମ କ'ଣ ଆମେ ଜାଣୁ କିନ୍ତୁ ସେହି ଧର୍ମରେ ଆମର ପ୍ରବୃତ୍ତି ହେଉ ନାହିଁ । ଆମେ ଅଧର୍ମ କଣ ବୁଝିପାରୁ, କିନ୍ତୁ ଅଧର୍ମ ମାର୍ଗରୁ ନିବୃତ୍ତ ହୋଇ ପାରୁ ନାହୁଁ । ଏହା ଠିକ୍ ନୁହେଁ ବୋଲି ଜାଣି ସୁଦ୍ଧା ସେଥିରେ ଆମେ ମଜ୍ଜିଯାଉ । ସଠିକ୍ କଥାକୁ ଜାଣିଲେ ମୁଦ୍ଧା ସେ ଦିଗରେ ଆମର ଆଗ୍ରହ ଆସୁ ନାହିଁ ।

ମାନବ ମାତ୍ରେ ଏହି ପ୍ରଶ୍ନ ଉଠୁଛି । ଯେଉଁମାନେ ନିଜକୁ ମାନବ ରୂପେ ପରିଚୟ ଦେବାକୁ ଚାହାନ୍ତି, ସେ ସମସ୍ତଙ୍କ ସମ୍ମୁଖରେ ଏହା ହିଁ ଏକମାତ୍ର ପ୍ରଶ୍ନ ହୋଇ ରହିଛି ।

ମନୁଷ୍ୟ ଚାହେଁ ମୁଁ କିପରି ଶ୍ରେଷ୍ଠ ବ୍ୟକ୍ତି ହେବି । ତାର ଇଚ୍ଛା ସେ ଭଗବାନଙ୍କର ସାଥୀ ହୋଇ ତାଙ୍କ ସହ ଲୀଳା ଖେଳା କରିବ ଏବଂ ତାଙ୍କ ସହ ଏକାକାର ହୋଇଯିବ । କିନ୍ତୁ ଏହି ଭାବ ସଙ୍ଗେ ସଙ୍ଗେ, ସେ ନିଜର ଦୁର୍ବଳତାକୁ ଦେଖି ନିଜେ ଅସମର୍ଥ ମନେ କରୁଛି ।

ଭାଗବତରେ ଗୋଟିଏ କଥା ଅଛି । କଂସ ଶ୍ରୀକୃଷ୍ଣଙ୍କୁ ଡ଼ାକିବା ପାଇଁ ଷଡ଼ଯନ୍ତ୍ର ରଚି ଥିଲା । ଯଜ୍ଞର ଆୟୋଜନ କଲା ଓ ଶ୍ରୀକୃଷ୍ଣଙ୍କୁ ଧରି ଆସିବା ପାଇଁ ଅକ୍ରୂରଙ୍କୁ ପଠାଇଲା ।

ଅକ୍ରୂର ଯିବା ସମୟରେ ଭାବୁଛନ୍ତି : "ଆହା, ମୋର କି ଭାଗ୍ୟ ! ଶ୍ରୀକୃଷ୍ଣଙ୍କ ସହ ଦେଖାହେବ । ସେ ମୋତେ କକା ବୋଲି ସମ୍ବୋଧନ କରିବେ । କି ଆନନ୍ଦ ! କି ମଧୁର ସେ ସମୟ ! କିନ୍ତୁ କ'ଣ ହେବ ? ମୋର ନାମ ତ ଅକ୍ରୂର, ଆଉ କର୍ମ ଅତି କ୍ରୂର । କଂସର ଅନ୍ନ ଖାଉଛି, ସେହି ପାପୀର ଗୁଲାମୀ କରୁଛି । ମୋ ପରି ବ୍ୟକ୍ତିକୁ ସତରେ କ'ଣ ଶ୍ରୀକୃଷ୍ଣ ଦେଖା କରିବେ ? ମୋତେ ଦେଖିବା କ୍ଷଣି ସେ ଅନ୍ତର୍ଦ୍ଧାନ ହୋଇଯିବେ ନାହିଁ ତ ?

ଅକ୍ରୂର ଯେତେବେଳେ ନିଜ କର୍ମ ପ୍ରତି ନଜର ପକାନ୍ତି ତାଙ୍କ ସାହସ ହଜିଯାଏ, ପାଦ ଥରିବାକୁ ଲାଗେ... । ପୁଣି ଯେତେବେଳେ ଭଗବାନ ଶ୍ରୀକୃଷ୍ଣଙ୍କ ସହଜସ୍ୱଭାବ ସ୍ମୃତିରାଜ୍ୟକୁ ଆସେ, ପରମାତ୍ମା ଉଦାରତା, ଦୟାଳୁତା, ସ୍ୱାଭାବିକତା, ସହଜତା, ଗରିମା ଏବଂ ଆତ୍ମଦୃଷ୍ଟିର ବିଚାର ଆସେ, ନିଜ ଠାରେ ଉତ୍ସାହ ଆସିଯାଏ ।

ଠିକ୍ ଏହିପରି ଆମ ସମସ୍ତଙ୍କ ଅବସ୍ଥା । ଭଗବାନଙ୍କ ମହାନତାକୁ ଦେଖିଲେ, ତାଙ୍କ ଅହେତୁକୀ କୃପା ଏବଂ କରୁଣା ମନେ ପଡ଼ିଗଲେ ଆମର ସାହସ ଏବଂ ଉତ୍ସାହ ଆପେ ଆପେ ଆସିଯାଏ । ‘‘ଆରେ, ଆମର ବ୍ରହ୍ମଜ୍ଞାନ କାହିଁକି ନ ହେବ ? ବ୍ରହ୍ମ-ସାକ୍ଷାତ୍କାର ସେପରି ଏତେ କଠିନ କଥା ନୁହେଁ । ପରୀକ୍ଷିତଙ୍କର ତ କେବଳ ସାତ ଦିନରେ ଜ୍ଞାନ ଲାଭ ହୋଇଥିଲା । ଘୋଡ଼ା ଉପରକୁ ଚଢୁ ଚଢୁ ରାଜା ଜନକଙ୍କୁ ଆତ୍ମଜ୍ଞାନ ଲାଭ ହୋଇଥିଲା । ମାତୃଗର୍ଭରେ ଥାଇ ଅଷ୍ଟବକ୍ରଙ୍କର ଜ୍ଞାନଲାଭ ସମ୍ଭବପର ହୋଇଥିଲା । ଲୀଲାଶାହ ବାପୁଙ୍କୁ ଯେବେ ବ୍ରହ୍ମଜ୍ଞାନ ଲାଭ ହୋଇଥିଲା ତ ଆମର କାହିଁକି ହୋଇ ନ ପାରିବ ?’’ ଏପରି ଭାବି ଉତ୍ସାହ ଆସିଯାଏ । ଈଶ୍ୱରଙ୍କ ଗରିମା ଏବଂ ମହାପୁରୁଷଙ୍କ ଜୀବନକୁ ଦେଖିବା ମାତ୍ରେ ଉତ୍ସାହ ବଢ଼ିଯାଏ, କିନ୍ତୁ ନିଜ ପ୍ରତି ଦୃଷ୍ଟି ନିକ୍ଷେପ କଲେ ସାହସ ଶିଥିଳ ହୋଇଯାଏ ।

ଏହାର କାରଣ କ'ଣ ? ଆମ ଠାରେ ଯାହା ସମ୍ଭାବନା ଅଛି, ଆମର ଯେଉଁ ସୁଷୁପ୍ତ ଚେତନା ଏବଂ ସତ୍ତ୍ୱଗୁଣ ଅଛି ସେହି ସତ୍ତ୍ୱକୁ ଆମେ ବିକଶିତ କରାଇ ନାହୁଁ ଏବଂ ରାଜସିକ ଓ ତାମସିକ ଗୁଣ ଆମ ଠାରେ ପୂର୍ଣ୍ଣ ମାତ୍ରାରେ ବିକଶିତ ହେଉଅଛି । ଏହି ରାଜସିକ ଓ ତାମସିକ ଗୁଣରେ ପ୍ରେରିତ ହୋଇ ଯେବେ ଆମର କାମ କରିବାର ପ୍ରବୃତ୍ତି ଉତ୍ପନ୍ନ ହୋଇଥାଏ, ସେତେବେଳେ ଆମେ ମାନସିକ ରୂପେ ଦୁର୍ବଳ ହୋଇ ପଡ଼ିଥାଉ । ଏଣୁ ଆମର ମନ ଶକ୍ତିହୀନ ହୋଇ ପଡ଼େ । ଯେଉଁମାନେ ସତ୍ତ୍ୱଗୁଣରେ ସ୍ଥିତ ବା ସତ୍ତ୍ୱଗୁଣକୁ ପାର କରିଛନ୍ତି ସେମାନେ ଜୀବନକୁ ସ୍ମରଣ କଲେ ମନରେ ବହୁତ ସାହସ ଆସିଯାଏ । ଆମେ ଜପ, ଉପାସନା, ଅନୁଷ୍ଠାନ, ଧ୍ୟାନ, ଭଜନ ଆଦି କରିବା ପାଇଁ ଆଗଭର ହେଉ ।

**ଶ୍ରେୟଶ୍ଚ ପ୍ରେୟଶ୍ଚ ମନୁଷ୍ୟମେ ତସ୍ତୌ ସଂପରୀତ୍ୟ ବିବିନକ୍ତି ଧୀରଃ ।**
**ଶ୍ରେୟୋ ହି ଧୀରୋଽଭିପ୍ରେୟସୋ ବୃଣୀତେ ପ୍ରେୟୋ ମନ୍ଦୋ ଯୋଗକ୍ଷେମାଦ୍‌ବୃଣୀତେ ॥**

ଶ୍ରେୟ ଏବଂ ପ୍ରେୟ (ପରସ୍ପର ମିଶ୍ରିତ ହୋଇ) ମନୁଷ୍ୟ ପାଖକୁ ଆସେ । ବୁଦ୍ଧିମାନ ପୁରୁଷ ଯଥାଯୋଗ୍ୟ ବିଚାର ପୂର୍ବକ ଏହି ଦୁଇଟିକୁ ଭିନ୍ନ କରି ଦେଖେ । ଶ୍ରେୟ ଏବଂ ପ୍ରେୟ ମଧ୍ୟରୁ ବିବେକୀ ଶ୍ରେୟକୁ ବାଛି ନିଏ କିନ୍ତୁ ମୂଢ଼ ନିଜର ଯୋଗକ୍ଷେମ ରକ୍ଷା ନିମନ୍ତେ ପ୍ରେୟକୁ ଗ୍ରହଣ କରେ । (କଠୋପନିଷଦ: ୨.୨.୨)

ଶ୍ରେୟ ମାର୍ଗରେ କେବଳ ଯେ ପରମାତ୍ମା ପ୍ରାପ୍ତ ହୁଏ ତାହା ନୁହେଁ, ମନ୍ତ୍ର ଜପ, ଅନୁଷ୍ଠାନ, ଉପାସନା ଦ୍ୱାରା ନିଜ ଐହିକ, ପରମାର୍ଥିକ, ପିତୃଲୋକ ତଥା ପୁତ୍ରପୌତ୍ରଙ୍କ କଲ୍ୟାଣ ମଧ୍ୟ ସାଧିତ ହୋଇ ପାରିଥାଏ ।

## ଶାସ୍ତ୍ରରେ ଉପାସନା ପ୍ରସଙ୍ଗ

ଶାସ୍ତ୍ରରେ ଆରାଧନା-ଉପାସନା ଦ୍ୱାରା କିପରି କାର୍ଯ୍ୟସିଦ୍ଧି ହୁଏ ତାର ବର୍ଣ୍ଣନା କରାଯାଉଛି, ରାଜା ଦଶରଥ ଯଜ୍ଞ ଦେବତାଙ୍କୁ ଆରାଧନା କରିଥିଲେ, ଯଜ୍ଞ ଦେବତା ଆବିର୍ଭାବ ହୋଇ ତାଙ୍କୁ ଚରୁ ପ୍ରଦାନ କଲେ । ସେଥିରୁ ରାମଚନ୍ଦ୍ର ଅବତରିତ ହେଲେ ।

ଭଗବାନ ଶ୍ରୀରାମ ମଧ୍ୟ ରାମେଶ୍ୱରଙ୍କୁ ସ୍ଥାପନ କରିଥିଲେ ଏବଂ ଶିବୋପାସନା କରିଥିଲେ, **'ଓଁ ନମଃ ଶିବାୟ'** ଜପର ଅନୁଷ୍ଠାନ କରିଥିଲେ । ତା' ପରେ ସେ ଲଙ୍କା ଅଭିମୁଖେ ଯୁଦ୍ଧ ଯାତ୍ରା ଆରମ୍ଭ କରିଥିଲେ ।

ଭଗବାନ ଶ୍ରୀକୃଷ୍ଣଙ୍କ ରାଣୀ ଜାମ୍ବବତୀଙ୍କର ପୁତ୍ର ନ ଥିଲେ । ସେ ସଦା ଦୁଃଖୀ ରହୁଥିଲେ, ଶ୍ରୀକୃଷ୍ଣ ସୂର୍ଯ୍ୟନାରାୟଣଙ୍କ ଉପାସନା କରିବାରୁ ଜାମ୍ବବତୀ ଶାମ୍ବ ନାମକ ପୁତ୍ର ଲାଭ କଲେ ।

ଭଗବାନ ବିଷ୍ଣୁ ମଧ୍ୟ ଦେବାଧିଦେବ ଭଗବାନ ଶିବଙ୍କ ଉପାସନା କରୁଥିଲେ । ପ୍ରତିଦିନ ସେ ଏକ ସହସ୍ର କମଳ ଶିବଙ୍କ ଆରାଧନା ପାଇଁ ଲଗାଉଥିଲେ । ଶିବ ଦିନେ ତାଙ୍କୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ମାୟାବଳରେ ସେଥିରୁ ଗୋଟିଏ ଫୁଲକୁ ଲୁଚାଇ ରଖିଲେ । ଶିବଙ୍କୁ ପୁଷ୍ପ ଚଢ଼ାଉଥିବା ସମୟରେ ବିଷ୍ଣୁ ଦେଖିଲେ ଶେଷରେ ଗୋଟିଏ କମଳ ଅଭାବ ହେଲା । ସେ ତତ୍‌କ୍ଷଣାତ ନିଜ ନେତ୍ର କମଳରୁ ଗୋଟିଏ ବାହାର କରି ଭଗବାନ ଶିବଙ୍କୁ ନିବେଦନ କଲେ । ଭୋଳାନାଥ ପ୍ରସନ୍ନ ହୋଇ ବିଷ୍ଣୁଙ୍କୁ ସୁଦର୍ଶନ ଚକ୍ର ଉପହାର ଦେଇଥିଲେ । ଯମରାଜା ମଧ୍ୟ ନର୍ମଦା କୂଳରେ ଯଜ୍ଞୋପାସନା କରି ଯମପୁରୀର ଅଧିଷ୍ଠାତା ହୋଇପାରିଲେ ।

ସାବତ ମା'ଙ୍କ ଦୁର୍ବ୍ୟବହାର ଯୋଗୁଁ ଧ୍ରୁବ ଅତି ବ୍ୟଥିତ ହେଲେ । ଈଶ୍ୱରୋପାସନା ନିମନ୍ତେ ଧ୍ରୁବ ଚାଲିଲେ ଜଙ୍ଗଲକୁ । ଭକ୍ତ ନାରଦ ତାଙ୍କୁ ମନ୍ତ୍ର ଦୀକ୍ଷା ଦେଲେ । ଧ୍ରୁବ ଅତି ନିଷ୍ଠାର ସହ ଦ୍ୱାଦଶାକ୍ଷରୀ ମନ୍ତ୍ର ଅନୁଷ୍ଠାନ କଲେ । ସମସ୍ତେ ଜାଣନ୍ତି ଯେ ସେ ଛଅ ମାସ ମଧ୍ୟରେ ସଗୁଣ ସାକାର ପରମାତ୍ମାଙ୍କର ସାକ୍ଷାତ୍କାର କରିପାରିଥିଲେ ।

## ମନ୍ତ୍ର : ପରମାର୍ଥିକ କ୍ଷେତ୍ରର ଟେଲିଫୋନ

ମନ୍ତ୍ର ଏପରି ଏକ ସାଧନ ଅଟେ ଯାହାକି ନିଜ ଭିତରେ ଥିବା ସୁପ୍ତ ଚେତନାକୁ ଜାଗ୍ରତ କରାଏ । ଆମ ଠାରେ ଥିବା ମହାନତାକୁ ପ୍ରକଟିତ କରାଏ ଏବଂ ଆମର ସୁଷୁପ୍ତ ଶକ୍ତି ସମୂହକୁ ବିକଶିତ କରେ ।

ସଦ୍‌ଗୁରୁଙ୍କ ଠାରୁ ପ୍ରାପ୍ତ ମନ୍ତ୍ରକୁ ବିଧିପୂର୍ବକ ଏବଂ ଅର୍ଥକୁ ବୁଝି ପ୍ରେମପୂର୍ଣ୍ଣ ହୃଦୟରେ ଯଦି ଜପ କରାଯାଏ ତେବେ କେଉଁ କଥା ଲାଭ କରାଯାଇ ନ ପାରେ ? ଯେପରି ଟେଲିଫୋନ ଡାୟଲ ଉପରେ ଥିବା ନମ୍ବରକୁ ଠିକ୍ ରୂପେ ଟିପିଲେ ବିଶ୍ୱର ଯେ କୌଣସି ସ୍ଥାନରେ ଥିବା ବ୍ୟକ୍ତିଙ୍କ ସହିତ ବାର୍ତ୍ତାଳାପ ସମ୍ଭବପର ହୁଏ, ସେହିପରି ମନ୍ତ୍ରକୁ ସଠିକ୍ ଢଙ୍ଗରେ ଜପ କଲେ ନିଶ୍ଚୟ ସିଦ୍ଧି ଲାଭ ହୋଇପାରେ । ଯେତେବେଳେ ଟେଲିଫୋନର ଏତେ ଛୋଟ ଡାୟଲକୁ ଉପଯୋଗ କରି ଆମେ ବିଶ୍ୱ ସହିତ ସମ୍ପର୍କ ସ୍ଥାପନ କରିପାରୁଛୁ । **ଯଦି ସେହିପରି ହୃଦୟରେ ଥିବା ଡାଏଲକୁ ଠିକ୍ ଠିକ୍ ଉପଯୋଗ କରି ବିଶ୍ୱେଶ୍ୱରଙ୍କ ସହିତ ଯେ ଆମେ ସମ୍ପର୍କ ରକ୍ଷା କରି ପାରିବା ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?** ବିଶ୍ୱର ଟେଲିଫୋନ ସମୟେ ସମୟେ 'ଏନ୍‌ଗେଜ୍' ଅର୍ଥାତ୍ 'କାର୍ଯ୍ୟରତ' ଥାଇପାରେ କିନ୍ତୁ ବିଶ୍ୱେଶ୍ୱରଙ୍କର ଟେଲିଫୋନ 'ଏନ୍‌ଗେଜ୍' ଦୋଷମୁକ୍ତ । ତାହା ସର୍ବତ୍ର ଏବଂ ସର୍ବଦା ସମସ୍ତଙ୍କ ପାଇଁ ଉନ୍ମୁକ୍ତ । କିନ୍ତୁ ହଁ... ନମ୍ବର ଲଗାଇବାରେ କିଞ୍ଚିତ ମାତ୍ର ଚାଲାକୀ କରାଗଲେ, ରଙ୍ଗ୍ ନମ୍ବର ହେବାର ଖୁବ୍ ଆଶଙ୍କା ରହିଛି । 'ରିଙ୍ଗ' ଯେଉଁଠି ହେବା କଥା ସେଠାରେ ନ ହୋଇ, ହେଉଛି ଅନ୍ୟଠାରେ । ଏହିପରି ମନ୍ତ୍ର ଜପରେ ମଧ୍ୟ ଟିକିଏ ଏପଟ ସେପଟ ହେଲେ, ମନ ଇଚ୍ଛା କରାଗଲେ ତା'ର ସଠିକ ପରିଣାମ ମିଳେ ନାହିଁ ।

ଆଜିକାଲି ଧର୍ମପ୍ରଚାର ଏତେ ଜୋର୍‌ସୋର୍‌ରେ ଚାଲିଥିଲେ ସୁଦ୍ଧା ମାନବ ଜୀବନରେ କାହିଁ ସେହି ସରସତା, ମାଧୁର୍ଯ୍ୟ ଏବଂ ଆନନ୍ଦର ପରିପ୍ରକାଶ ? ଏହାର କାରଣ କ'ଣ ? ବିଶ୍ୱେଶ୍ୱରଙ୍କ ସହ ସମ୍ପର୍କ ରକ୍ଷା କରିବା ପାଇଁ ଟେଲିଫୋନ ନମ୍ବର ଠିକ୍ ରୂପେ ଜୋଡ଼ି ହେଉ ନାହିଁ । ମନ୍ତ୍ରର ସଠିକ ଅର୍ଥ ଆମେ ବୁଝି ପାରୁ ନାହୁଁ । ବିଧି ଅନୁଷ୍ଠାନ ଆମକୁ ଜଣା ନାହିଁ କିମ୍ବା ଜାଣିଥିଲେ ସୁଦ୍ଧା ଖାମଖିଆଲି ଭାବ ଯୋଗୁଁ ମନ୍ତ୍ର ସିଦ୍ଧ ହେଉ ନାହିଁ ।

ମନ୍ତ୍ର-ଜପ କରିବାର ନିୟମ, ମନ୍ତ୍ରର ଅକ୍ଷର, ମନ୍ତ୍ରର ଅର୍ଥ, ମନ୍ତ୍ରାନୁଷ୍ଠାନର ବିଧି ଜାଣି ପାରିଲେ ଆମେ ଯୋଗ୍ୟ ବିବେଚିତ ହୋଇ ପାରିବୁ । ଆମେ ବିଶ୍ୱେଶ୍ୱରଙ୍କ ସହିତ ଏକ ହୋଇ ପାରିବୁ । ଏପରିକି 'ଆମେ ସାକ୍ଷାତ୍ ବିଶ୍ୱେଶ୍ୱର ଅଟୁ'... ଏହି ଅନୁଭବ ମଧ୍ୟ ଲାଭ କରି ପାରିବୁ ।

## *ଅନୁଷ୍ଠାନର ଆବଶ୍ୟକତା*

ଆମ ସ୍ଥୂଳ ଶରୀରକୁ ମାତା-ପିତା ଜନ୍ମ ଦେଇଛନ୍ତି ଏବଂ ବ୍ରହ୍ମନିଷ୍ଠ ସଦ୍‌ଗୁରୁ, ଆତ୍ମନିଷ୍ଠ ମହାପୁରୁଷ ଆମର ଚିନ୍ମୟ ଶରୀରକୁ ମନ୍ତ୍ରଦୀକ୍ଷା ଦ୍ୱାରା ଜନ୍ମ ଦିଅନ୍ତି । ଯେପରି ଗୋଟିଏ ଜଳନ୍ତା ଦୀପ ଦ୍ୱାରା ଅନ୍ୟ ଏକ ଦୀପ ଜଳିଉଠେ, ଠିକ୍ ସେହିପରି ଦୀକ୍ଷା ସମୟରେ ମନ୍ତ୍ର ଦ୍ୱାରା ସାଧକ ଠାରେ ବା ଶିଷ୍ୟ ଠାରେ ସଦ୍‌ଗୁରୁ ଦ୍ୱାରା ଚୈତନ୍ୟର ସ୍ଫୁଲିଙ୍ଗ ସଞ୍ଚାରିତ ହୋଇଥାଏ । କିନ୍ତୁ ମନ୍ତ୍ର ଲାଭ ପରେ ଯଦି ଏହାର ଅନୁଷ୍ଠାନ କରା ନ ଯାଏ, ବିଧି ସହ ପୁରଶ୍ଚରଣ ଦ୍ୱାରା ମନ୍ତ୍ର ସିଦ୍ଧ କରା ନ ଯାଏ, ସାଧନା ଦ୍ୱାରା ଏହି ସ୍ଫୁଲିଙ୍ଗକୁ ଫୁଙ୍କି ଫୁଙ୍କି ପ୍ରକାଶିତ ଜ୍ୟୋତି ରୂପେ ପ୍ରକଟିତ କରା ନ ଯାଏ ତେବେ ସେହି ମନ୍ତ୍ର ସେତେ ପରିମାଣରେ ସଦୁପଯୋଗ ହୋଇପାରେ ନାହିଁ ।

ଶ୍ରଦ୍ଧା, ଭକ୍ତିଭାବ ଏବଂ ଯଥାଯୋଗ୍ୟ ବିଧି ବିଧାନର ସମନ୍ୱୟ ରକ୍ଷା କରି ଯେତେବେଳେ ମନ୍ତ୍ରର ଅର୍ଥକୁ, ମନ୍ତ୍ରର ରହସ୍ୟକୁ ଆତ୍ମସାତ୍ କରାଯାଏ ସେତେବେଳେ ସାଧକ ଠାରେ ଚୈତନ୍ୟତାର ଦିବ୍ୟ ଆନ୍ଦୋଳନ ସୃଷ୍ଟି ହୋଇଥାଏ । ତାର ଜନ୍ମ-ଜନ୍ମାନ୍ତରର ପାପତାପମୟ ସଂସ୍କାର ସମୂହ ଧୋଇ ହେବାରେ

ଲାଗେ । ଚେତନା, ଜୀବନ୍ତ, ଜ୍ୱଳନ୍ତ ତଥା ଜାଗରିତ ରୂପ ଧାରଣ କରି ଚମକି ଉଠେ । ଅତି ଶ୍ରଦ୍ଧାର ସହ ମନ୍ତ୍ର ଅନୁଷ୍ଠାନ କରାଯାଇ ପାରିଲେ ପରମାତ୍ମା-ପ୍ରେମ ବା ଆତ୍ମଜ୍ଞାନ ଉଦୟର ସମ୍ଭାବନା ଆହୁରି ବୃଦ୍ଧି ହୋଇଥାଏ ।

ଅନୁଷ୍ଠାନ ଅନେକ ପ୍ରକାରର ହୋଇଥାଏ । ସେଥି ମଧ୍ୟରୁ ମନ୍ତ୍ର ଜପାନୁଷ୍ଠାନକୁ ଆଖି ଆଗରେ ରଖି କେତେକ କଥା ଆମେ ଜାଣିବା ଉଚିତ । ମନ୍ତ୍ରାନୁଷ୍ଠାନ ପାଇଁ କିଛି ନିୟମର ଆବଶ୍ୟକତା ରହିଛି । ଯମ-ନିୟମର ସମ୍ପୂର୍ଣ୍ଣ ପାଳନ ଦ୍ୱାରା ବାହ୍ୟ ଓ ଅନ୍ତଃଶୁଦ୍ଧି ଏବଂ ଶାନ୍ତି ବଜାୟ ରହେ ।

## ଅନୁଷ୍ଠାନ କିଏ କରେ ?

ମନ୍ତ୍ରାନୁଷ୍ଠାନ ସ୍ୱୟଂ କରିବା ବିଧେୟ । ଏହା ସର୍ବୋତ୍ତମ କଳ୍ପ ଅଟେ । ଯଦି ଶ୍ରୀ ଗୁରୁଦେବ ହିଁ କୃପା ପୂର୍ବକ ଅନୁଷ୍ଠାନ କରି ଦିଅନ୍ତି ତେବେ ପଚାରିବାର ଆଉ କ'ଣ ଅଛି ? ନିଜେ ଅନୁଷ୍ଠାନ କରି ନ ପାରିଲେ ପରୋପକାରୀ, ପ୍ରେମୀ, ଶାସ୍ତ୍ରବେତ୍ତା, ସଦାଚାରୀ ବ୍ରାହ୍ମଣଙ୍କ ଦ୍ୱାରା ମଧ୍ୟ ଏହା କରାଯାଇପାରିବ । କେତେକ ସ୍ଥଳରେ ନିଜ ଧର୍ମ ପତ୍ନୀ ଦ୍ୱାରା ମଧ୍ୟ ଅନୁଷ୍ଠାନ କରାଇବାର ବିଧାନ ରହିଛି । ଏହି ପ୍ରସଙ୍ଗରେ ପତ୍ନୀ ପୁତ୍ରବତୀ ହୋଇଥିବା ଉଚିତ । ପତ୍ନୀ ମଧ୍ୟ ସତତ ଅନୁଷ୍ଠାନ କରିପାରେ ନାହିଁ, ଯେହେତୁ ତା'ର ମାସିକ ଧର୍ମର ସମସ୍ୟା ରହିଛି । ମାସିକ ଧର୍ମ ସମୟରେ ଅନୁଷ୍ଠାନ କରିବା ଦ୍ୱାରା ତାହା ଖଣ୍ଡିତ ହୋଇଥାଏ । **ମହିଳାମାନେ କେବଳ ସେତିକି ଦିନ ଅନୁଷ୍ଠାନ ପାଇଁ ଆୟୋଜନ କରିବେ ଯେତେ ଦିନ ସେମାନଙ୍କ ହସ୍ତ ସ୍ୱଚ୍ଛ ଓ ପବିତ୍ର ଥିବ ।**

## ସ୍ଥାନ ନିରୂପଣ

ଅନୁଷ୍ଠାନ ପାଇଁ ଏପରି ଏକ ସ୍ଥାନ ପସନ୍ଦ କରିବା ଉଚିତ ଯେଉଁଠାରେ ତୁମର ମନ ମନ୍ତ୍ରରେ ଏକନିଷ୍ଠ ରୂପେ ଲାଗି ରହିବ, ମନ୍ତ୍ର ଅର୍ଥରେ ତଲ୍ଲୀନ ହୋଇ ପାରିବ ଏବଂ ଯେଉଁଠାରେ ବସି ଜପ କଲେ ଚିତ୍ତର ଗ୍ଳାନି ଦୂର ହେବ ଏବଂ ପ୍ରସନ୍ନତା ବଢ଼ିବାରେ ମଧ୍ୟ ସହାୟକ ହେବ । ଅନୁଷ୍ଠାନ ନିମିତ୍ତ ଏହିପରି ସ୍ଥାନ ସର୍ବଶ୍ରେଷ୍ଠ ।

'ଶ୍ରୀଗୁରୁଗୀତା'ରେ ନିର୍ଦ୍ଦେଶ ଅଛି ଯେ ଜପାନୁଷ୍ଠାନ ପାଇଁ ସାଗର ବା ନଦୀତଟ, ତୀର୍ଥସ୍ଥାନ, ବିଷ୍ଣୁ ବା ଦେବୀ ମନ୍ଦିର ବା ଅନ୍ୟ ପବିତ୍ର ଦେବାଳୟ, ଗୋଶାଳା, ବଟବୃକ୍ଷ, ଅଁଳାବୃକ୍ଷ ମୂଳ, ମଠ ବା ତୁଳସୀବନ (ବୃନ୍ଦାବନ) ବା କୌଣସି ପବିତ୍ର ନିର୍ମଳ ସ୍ଥାନରେ ବସିବା ଉଚିତ । ଶ୍ମଶାନରେ, ବେଲ ଗଛ, ବଟବୃକ୍ଷ, କନକବୃକ୍ଷ ମୂଳେ ବା ଆମ୍ରବୃକ୍ଷ ନିକଟରେ ଜପ କଲେ ଶୀଘ୍ର ସିଦ୍ଧି ଲାଭ ହୁଏ ।

ଏପରି ସ୍ଥାନରେ ଅନୁଷ୍ଠାନ କର ନାହିଁ ଯେଉଁଠାରେ ତୁମେ ଭୟଭୀତ ହୁଅ, ପ୍ରାକୃତିକ ପରିବେଶ ଓ ଘଟଣା ଯଦି ତୁମକୁ ବିକ୍ଷିପ୍ତ କରାଏ, ହିଂସ୍ର ପ୍ରାଣୀମାନଙ୍କର ଯଦି ଭୟ ରହିଛି ତଥା ଯେଉଁ ସ୍ଥାନରେ ଲୋକମାନେ ଅନୁଷ୍ଠାନ ବିରୋଧୀ ଅଟନ୍ତି । ମନରେ ବିରୋଧୀଙ୍କ ପ୍ରତି ତୁମର ବିରୋଧ ଭାବନା ହେବା ସ୍ୱାଭାବିକ । ଏଣୁ ଶତ୍ରୁ ଚିନ୍ତନ ଓ ଭୟ ହେତୁ ମନ୍ତ୍ରରେ ମନଯୋଗ ହେବା ଅସମ୍ଭବ । ସେହିପରି ଚୋର-ଡାକୁ ଆଦିଙ୍କର ଯେଉଁଠାରେ ଭୟ ରହିଛି ବା ସର୍ପ-ବିଛା ଆଦିର ଭୟ ରହିଛି ସେଠାରେ ଅନୁଷ୍ଠାନ କରିବା ଠିକ୍ ହେବ ନାହିଁ ।

ଇନ୍ଦ୍ରିୟମାନଙ୍କୁ ଆକର୍ଷିତ କରି ବହିର୍ମୁଖ କରାଉଥିବା ଏହିପରି ବାତାବରଣ ଥିବା ସ୍ଥାନରେ ସଫଳତା ମିଳିବା ସମ୍ଭବପର ନୁହେଁ । ସିନେମା ଘରେ ବସି ବା ନିଜ ଘରେ ଟିଭି ବା ରେଡ଼ିଓ ଆଦି ଚାଲୁଥିବା ସ୍ଥାନରେ ଅନୁଷ୍ଠାନ କଲେ ସଫଳତା ମିଳିବ ନାହିଁ ।

ଅନ୍ୟ କୌଣସି ସ୍ଥାନକୁ ନ ଯାଇ ନିଜ ବାସସ୍ଥାନରେ ହିଁ ଏକ କୋଠରୀକୁ ସଫାସୁତରା କରି ଧୂପଦୀପ, ଅଗରବତୀ, ପୁଷ୍ପ ଚନ୍ଦନାଦି ଦ୍ୱାରା ପବିତ୍ର ମନ ମୁତାବକ ବାତାବରଣ ସୃଷ୍ଟି କରି ଅନୁଷ୍ଠାନ ପାଇଁ ବସିପାରିବ । ପୂରା କୋଠରୀଟିଏ ହୋଇ ନ ପାରିଲେ ବି ତାର ଗୋଟିଏ କୋଣ ମଧ୍ୟ ଯଥେଷ୍ଟ ହେବ ।

ସୂର୍ଯ୍ୟ, ଅଗ୍ନି, ଗୁରୁ, ଚନ୍ଦ୍ରମା, ଦୀପ, ଜଳ, ବ୍ରାହ୍ମଣ ଏବଂ ଗାଈ ସମ୍ମୁଖରେ ବସି ଜପ କରିବା ଉତ୍ତମ । ଏହି ନିୟମାବଳୀ ସମସ୍ତଙ୍କ ପାଇଁ ବାଧ୍ୟ ନୁହେଁ । ମୁଖ୍ୟ କଥା ହେଲା ଯେଉଁଠାରେ ବସିଲେ ମନର ଗ୍ଲାନି ଦୂର ହୁଏ ଏବଂ ପ୍ରସନ୍ନତା ବଢ଼େ ସେହି ସ୍ଥାନ ହିଁ ସର୍ବଶ୍ରେଷ୍ଠ ।

ତେବେ ଘରେ ଜପ କରିବା ଦ୍ୱାରା ଯାହା ଫଳ ମିଳେ ତାର ଦଶ ଗୁଣ ଫଳ ଗୋଶାଳାରେ ଅନୁଷ୍ଠାନ କଲେ ମିଳେ । ହଁ, ସେହି ଗୋଶାଳାରେ ଗାଈ ସହ ବଳଦ ନ ରହିବା ଉଚିତ । ଯଦି ସେଠାରେ ବଳଦ ହେବେ ତ ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ସୃଷ୍ଟି ହେଉଥିବା ଚୁମ୍ବକତ୍ୱ ଯୋଗୁଁ **'ଭାଇବ୍ରେସନ'** ବାୟବୀୟ ପରିବେଶ କଳୁଷିତ ହୋଇଥାଏ । ଜଙ୍ଗଲରେ ଅନୁଷ୍ଠାନ କଲେ ଘର ଅପେକ୍ଷା ଶହେ ଗୁଣ, ବନ୍ଧ ବା ପୋଖରୀ କୂଳରେ ହଜାର ଗୁଣ ଫଳ ହୋଇଥାଏ । ନଦୀ ବା ସାଗର ତଟରେ, ପର୍ବତ ବା ଶିବାଳୟରେ ଜପ କଲେ ଲକ୍ଷେ ଗୁଣ ଫଳ ମିଳେ । ଯେଉଁଠାରେ ଜ୍ଞାନସାଗରର ଉତ୍ତାଳ ତରଙ୍ଗ ତରଙ୍ଗାୟିତ ହୋଇଛି, ଜ୍ଞାନ ଚର୍ଚ୍ଚା ହୋଇଛି, ଯେଉଁ ସ୍ଥାନରେ ପୂର୍ବରୁ କୌଣସି ଜ୍ଞାନୀ ବାସ କରୁଥିଲେ ସେହିପରି ଏକ ତୀର୍ଥ ସ୍ଥାନରେ ଜପାନୁଷ୍ଠାନ କରିବା ସର୍ବଶ୍ରେଷ୍ଠ । ଯଦି ସଦ୍‌ଗୁରୁଙ୍କ ପବିତ୍ର ସାନ୍ନିଧ୍ୟରେ, ଜୀବିତ ବ୍ରହ୍ମଜ୍ଞାନୀ ମହାପୁରୁଷଙ୍କ ମାର୍ଗଦର୍ଶନ ଅନୁସାରେ ଜପାନୁଷ୍ଠାନ କରିବାର ସୌଭାଗ୍ୟ ଲାଭ ହୁଏ ତେବେ ଅନନ୍ତ ଗୁଣ ଫଳ ଲାଭ ହେବ, ଏଥିରେ ସନ୍ଦେହ ନାହିଁ ।

## *ଆସନ*

୧) ଧ୍ୟାନ, ଜପ ଆଦି ସାଧନ ପାଇଁ ଯଥୋଚିତ ଆସନ ଅତି ଆବଶ୍ୟକ । ଜପ କରିବା ଦ୍ୱାରା ଆମ ଶରୀରରେ ବିଦ୍ୟୁତ ଶକ୍ତି ସଞ୍ଚାର ହୁଏ । ଆଧ୍ୟାତ୍ମିକ ଉତ୍‌ଥାନରେ ଏହି ଶକ୍ତି ଅତି ମହତ୍ତ୍ୱପୂର୍ଣ୍ଣ ଅଟେ । ଯାହାର ଶରୀରରେ ବିଦ୍ୟୁତ-ଶକ୍ତି ବିପୁଳ ପରିମାଣରେ ହୁଏ, ସାହସ, ଉତ୍ସାହ ଓ ନିରୋଗତା ତାଙ୍କର ସ୍ୱଭାବ ହୋଇଯାଏ । ଯାହାର ଶରୀରରେ ବିଦ୍ୟୁତ ଶକ୍ତି କମ୍, ତାକୁ ରୋଗ କବଳିତ କରିଥାଏ ।

ବିନା ଆସନରେ ଜପ କରି ବସିଲେ ଶରୀରରେ ଉତ୍ପନ୍ନ ହେଉଥିବା ବିଦ୍ୟୁତ ଶକ୍ତିକୁ ଭୂମି ଆକର୍ଷିତ କରେ । ଏଣୁ ଏହି ବିଦ୍ୟୁତ-ଶକ୍ତି ସଂରକ୍ଷଣ ନିମନ୍ତେ ଜପାନୁଷ୍ଠାନ କାଳରେ ଆସନରେ ବସିବା ଉଚିତ । ଏହି ଆସନ ବିଦ୍ୟୁତ କୁପରିବାହୀ (Non-Conductor) ହେବା ଜରୁରୀ । ଆସନ ଗରମ ହେବା ଉଚିତ, ମୋଟା

କମ୍ବଳ ହୋଇଥିଲେ ଭଲ । ଗଦି ଉପରେ ସାମାନ୍ୟ ଆବରଣ ବା ପ୍ଲାଷ୍ଟିକ ପକାଇଲେ ଚଳିବ ।

ଭୂମି ଉପରେ ଖୋଲା ପାଦରେ ଚାଲିବା ଦ୍ୱାରା ମଧ୍ୟ ଶରୀର ଭିତରେ ଥିବା ବିଦ୍ୟୁତ ଶକ୍ତି ଭୂମିକୁ ଚାଲିଯାଏ । ତେଣୁ ସାଧନା କାଳରେ ଏହି ବୈଜ୍ଞାନିକ ତଥ୍ୟକୁ ଜାଣି ନିଜ ଶକ୍ତିର ସଂରକ୍ଷଣ ଏବଂ ସଂବର୍ଦ୍ଧନ କରିବା ଉଚିତ । ଏହି ବୈଜ୍ଞାନିକ ଦୃଷ୍ଟି **'ଗୁରୁଗୀତା'**ରୁ ଉପଲବ୍ଧି ହୁଏ । ଭଗବାନ ଶଙ୍କର କହିଛନ୍ତି : ''ବିନା ଆସନରେ କରୁଥିବା ଜପ ନୀଚ କର୍ମ ହୁଏ ଓ ନିଷ୍ଫଳ ହୋଇଯାଏ ।'' କେଉଁ ଆସନରେ କି ପ୍ରଭାବ, କେଉଁଥିପାଇଁ କେଉଁ ଆସନ ଉପଯୋଗୀ ତାହା ନିମ୍ନରେ ବର୍ଣ୍ଣନା କରିଛନ୍ତି :

''ବସ୍ତ୍ରର ଆସନ ଉପରେ ବସି ଜପ କଲେ ଦାରିଦ୍ର୍ୟ ଭୋଗ ହୁଏ । ପଥର ଆସନରେ ରୋଗ, ଭୂମି ଉପରେ ବସି ଜପ କଲେ ଦୁଃଖ ଆସେ ଏବଂ କାଠ ତିଆରି ଆସନ ନିଷ୍ଫଳତାର କାରଣ ହୁଏ । କୁଶ ଏବଂ ଦୁବ ଘାସରେ ତିଆରି ଆସନ ଉପରେ ଧଳା କମ୍ବଳ ବିଛାଇ ତା'ଉପରେ ବସି ଜପ କରିବା ଉଚିତ । କଳା ମୃଗ ଚର୍ମ ଓ କୁଶାସନରେ ବସି ଜପ କଲେ ଜ୍ଞାନ ସିଦ୍ଧି ହୁଏ । ବ୍ୟାଘ୍ର ଚର୍ମ ଉପରେ ବସି ଜପ କଲେ ମୁକ୍ତି ପ୍ରାପ୍ତ ହୁଏ; କିନ୍ତୁ **କମ୍ବଳ ଆସନରେ ବସିଲେ ସର୍ବସିଦ୍ଧି ପ୍ରାପ୍ତ ହୁଏ ।''**

ଅନ୍ୟ କୌଣସି ବ୍ୟକ୍ତିର ଆସନ ଉପରେ ବସି ଜପ କଲେ ସେହି ଜପ ଫଳଦାୟୀ ହୁଏ ନାହିଁ । ସାଧନା ନିମନ୍ତେ ନିଜର ଅଲଗା ଆସନ ହେବା ଉଚିତ । ତାହା ଅନ୍ୟ ଦ୍ୱାରା ବ୍ୟବହୃତ ହେବ ନାହିଁ । ନିଜ ଆସନ, ନିଜ ମାଳା, ନିଜ ଗୁରୁମନ୍ତ୍ର ସୁରକ୍ଷିତ ହେବା ବିଧେୟ ।

ମୁଣ୍ଡ ଉପରେ ବସ୍ତ୍ର ଆବରଣ କରି ଜପ କଲେ ସେହି ଜପ ନିଷ୍ଫଳ ହୁଏ ।

୨) ଜପାନୁଷ୍ଠାନ କାଳରେ ଲମ୍ବା ସମୟ ସ୍ଥିର ଏବଂ ଏକାଗ୍ର ହୋଇ ବସିବା ପାଇଁ ପଦ୍ମାସନ, ଅର୍ଦ୍ଧପଦ୍ମାସନ, ସିଦ୍ଧାସନ, ସ୍ୱସ୍ତିକାସନ ଅଭ୍ୟାସ କରିବା ଭଲ । କିନ୍ତୁ କୌଣସି ଆସନ ଯଦି ଅଭ୍ୟାସ ନ ହୋଇଛି ସୁଖାସନରେ ସୁସ୍ଥ (ସହଜ

ସ୍ଥିତିରେ) ଓ ସିଧା ହୋଇ ବସିବା ଠିକ୍ ହେବ । ମୁଖ୍ୟତଃ ସର୍ବଦା ଧ୍ୟାନ ରଖିବା ଉଚିତ ଯେ ସାଧାରଣ ଭାବେ ବସିବା ବେଳେ ହେଉ ବା ବିଶେଷ ଅନୁଷ୍ଠାନ ଅବଧି କାଳରେ ହେଉ ମେରୁଦଣ୍ଡକୁ ବିଲ୍‌କୁଲ୍ ସିଧା ରଖି ବସିବା ଆବଶ୍ୟକ ।

ଆମର ଜୀବନୀଶକ୍ତି, ଚେତନାଶକ୍ତି ବୀଜ ରୂପରେ ନିମ୍ନ କେନ୍ଦ୍ରରେ, ମୂଳାଧାର ଚକ୍ରରେ ସୁଷୁପ୍ତ ଅବସ୍ଥାରେ ପଡ଼ିରହିଛି, ଜପ ଦ୍ୱାରା ଏହା ଜାଗ୍ରତ ହୁଏ । ଯେତେବେଳେ ଏହା ଊର୍ଦ୍ଧ୍ୱଗାମୀ ହୁଏ, ସେତେବେଳେ କାମରେ ଲାଗେ । ଜପ ଦ୍ୱାରା ଏହାକୁ ଜାଗ୍ରତ କରିବାକୁ ହେବ, ବିକଶିତ କରିବାକୁ ହେବ । ଯଥାର୍ଥ ରୀତିରେ, ସଦ୍‌ଗୁରୁଙ୍କ ପରାମର୍ଶ ଅନୁସାରେ ଭଲ ରୂପେ ଜାଣି, ପ୍ରେମ-ଆଦର ପୂର୍ବକ ଜପ କଲେ ଜୀବନୀଶକ୍ତି ଜାଗରଣ ହୁଏ । ସେହି ଜାଗ୍ରତ ଶକ୍ତିକୁ ଊର୍ଦ୍ଧ୍ୱଗାମୀ କରାଇବା ନିମନ୍ତେ ମେରୁଦଣ୍ଡ ହାଡ଼ ସିଧା ରହିବା ପରମ ଆବଶ୍ୟକ ।

ବିଦ୍ୟାଳୟରେ ମଧ୍ୟ ପଢ଼ାଇବା ସମୟରେ ଶିକ୍ଷକ ପିଲାମାନଙ୍କୁ ସିଧା ହୋଇ ବସିବାକୁ ନିର୍ଦ୍ଦେଶ ଦିଅନ୍ତି । ଯେଉଁ ପିଲାମାନେ ପଢ଼ିବା ଏବଂ ଲେଖିବା ସମୟରେ ନିମ୍ନକୁ ଝୁଙ୍କି ବୁଢ଼ାଙ୍କ ପରି ବସନ୍ତି ସେମାନଙ୍କର ସ୍ମୃତିଶକ୍ତି କ୍ଷୀଣ ହୁଏ । ସେମାନେ ପାଠପଢ଼ାରେ ଆଗୁଆ ହୋଇ ପାରନ୍ତି ନାହିଁ ଏବଂ ଭବିଷ୍ୟତ ଜୀବନ ଯାତ୍ରାରେ ଅକୃତକାର୍ଯ୍ୟ ହୁଅନ୍ତି । ସେମାନଙ୍କର ସାହସ,ଉତ୍ସାହ, ନିର୍ଭୀକତା ବିକାଶ ଲାଭ କରିପାରେ ନାହିଁ ।

ହିଟଲର ଯେ କୌଣସି ଦେଶକୁ ଆକ୍ରମଣ କରିବା ପୂର୍ବରୁ ନିଜ ଲୋକଙ୍କୁ ସେଠାକୁ ପଠାଇ ଅନୁସନ୍ଧାନ କରି ଦେଖନ୍ତି ଯେ ସେହି ଦେଶବାସୀ ବସିବା ଉଠିବା ଚାଲିବା ଇତ୍ୟାଦି କାମ ମେରୁଦଣ୍ଡ ସିଧା ସଳଖ ରଖି କରନ୍ତି କି ଅଣ୍ଟାକୁ ଝୁଙ୍କି କରନ୍ତି । ସେଠାକାର ଯୁବକମାନେ ବୃଦ୍ଧଙ୍କ ପରି ଚାଲବୁଲ କରୁଛନ୍ତି କି ବୃଦ୍ଧମାନେ ମଧ୍ୟ ଯୁବକଙ୍କ ପରି ବସିବା ଉଠିବା, ଯିବା ଆସିବା କରୁଛନ୍ତି । ଯେଉଁ ଦେଶର ଲୋକମାନେ ମେରୁଦଣ୍ଡକୁ ସିଧା ରଖି ସମସ୍ତ କାମ କରନ୍ତି ହିଟଲର ବୁଝି ନିଅନ୍ତି ଯେ ସେହି ଦେଶକୁ ଜୟ କରିବା ନିଶ୍ଚୟ କଠିନ ହେବ । ଯେଉଁ ଲୋକ ମେରୁଦଣ୍ଡ ସିଧା ରଖି ସବୁ କାମ କରେ, ସେ ନିଶ୍ଚିତ ଉତ୍ସାହୀ ହୋଇଥିବ । ତାଙ୍କ ଜୀବନୀଶକ୍ତି

ଠିକ୍ ରୂପେ କାମ କରୁଥିବ । କିନ୍ତୁ ଯେ ଆଗକୁ ଝୁଙ୍କି ବସେ ଏବଂ ଚାଲବୁଲ କରେ ତା' ଜୀବନ ଥିବା ସତ୍ତ୍ୱେ ସେ ମୃତ । ତାକୁ ହରାଇବା ପାଇଁ ସମୟ ଲାଗେ ନାହିଁ ।

ଯେଉଁ ଲୋକ କାଛକୁ ଆଶ୍ରୟ କରି ଜପ କରେ, କାଛ ତାଂକୁ ନିଜ ପରି ଜଡ଼ କରିଦିଏ । ତେଣୁ ନିଜ ଜୀବନୀଶକ୍ତିର ବିକାଶ ଲାଭ ନିମନ୍ତେ ଜପ ସମୟରେ କାଛ ଆଶ୍ରୟ ନେବ ନାହିଁ । ସିଧା ହୋଇ ବସିବା ଠିକ୍ ହେବ ।

## ଦିଗ

ସାଧାରଣତଃ ପୂର୍ବ ଅଥବା ଉତ୍ତର ଦିଗକୁ ମୁଖ କରି ଜପ କରିବା ଉଚିତ । ତେବେ ଅଲଗା ଅଲଗା ଉଦ୍ଦେଶ୍ୟ ସାଧନ ନିମନ୍ତେ ଭିନ୍ନ ଭିନ୍ନ ଦିଗକୁ ମୁଖ କରି ଜପ କରିବା ପାଇଁ ବିଧାନ ରହିଛି ।

''**ଶ୍ରୀଗୁରୁଗୀତା**'ରେ ଉଲ୍ଲେଖ ଅଛି ଯେ ଉତ୍ତର ମୁଖ କରି ଜପ କଲେ ଶାନ୍ତି, ପୂର୍ବ ମୁଖ କରି ବସିଲେ ବଶୀକରଣ, ଦକ୍ଷିଣକୁ ମୁଖ କଲେ ମାରଣ ସିଦ୍ଧ ହୋଇଥାଏ ଏବଂ ପଶ୍ଚିମାଭିମୁଖ ଦ୍ୱାରା ଧନ ପ୍ରାପ୍ତି ହୁଏ ।

ଅଗ୍ନିକୋଣକୁ ମୁଖ କରି ଜପ କଲେ ଆକର୍ଷଣ, ବାୟବ୍ୟକୋଣ ଦିଗରେ ଶତ୍ରୁନାଶ, ନୈଋତ୍ୟ କୋଣ ଦିଗରେ ଦର୍ଶନ ଏବଂ ଐଶାନ୍ୟ କୋଣ ଦିଗରେ ମୁଖ କରି ଜପ କଲେ ଜ୍ଞାନ ପ୍ରାପ୍ତି ହୁଏ ।'

## ମାଳା

ସାଧକଙ୍କ ପାଇଁ ମାଳା ଏକ ମହତ୍ତ୍ୱପୂର୍ଣ୍ଣ ଉପକରଣ । ମନ୍ତ୍ରଜପରେ ମାଳା ଅତି ସହାୟକ । ଏଣୁ ବୁଦ୍ଧିମାନ ସାଧକ ନିଜ ମାଳାକୁ ପ୍ରାଣ ପରି ପ୍ରିୟ ମନେ କରନ୍ତି ଏବଂ ଗୁପ୍ତଧନ ପରି ତାର ସୁରକ୍ଷା କରନ୍ତି । ମାଳାର ପ୍ରାଣ ପ୍ରତିଷ୍ଠା ପାଇଁ ଅଶ୍ୱତ୍ଥ ପତ୍ର ଉପରେ ଏହାକୁ ସ୍ଥାପନ କରି ନିମ୍ନୋକ୍ତ ମନ୍ତ୍ର ସହିତ ପୂଜା କରାଯାଏ...

**ତ୍ୱଂ ମାଳେ ସର୍ବଦେବାନାଂ ପ୍ରୀତିଦା ଶୁଭଦା ଭବ ।**
**ଶିବଂ କୁରୁଷ୍ୱ ମେ ଭଦ୍ରେ ଯଶୋବୀର୍ଯ୍ୟଂ ଚ ସର୍ବଦା ।।**

ଅର୍ଥାତ୍ : 'ହେ ମାଳା ! ତୁମେ ସର୍ବଦେବତାଙ୍କ ପ୍ରୀତି ଓ ଶୁଭ ଫଳଦାୟକ । ମୋତେ ତୁମେ ଯଶ ଏବଂ ବଳ ପ୍ରଦାନ କର ତଥା ସର୍ବଦା ମୋର

କଲ୍ୟାଣ ସାଧନ କର ।' ଏହା କରି ପୂଜନ କଲେ ମାଳା ପ୍ରତି ଶ୍ରଦ୍ଧା ବୃତ୍ତି ଜାଗ୍ରତ ହୁଏ ଏବଂ ସେଥିରେ ପରମାତ୍ମା ଚେତନାର ଆଭାସ ହୁଏ । ମାଳାକୁ ବସ୍ତ୍ରାବୃତ କରି ବା ଗୋମୁଖୀ ଭିତରେ ନ ରଖି ଜପ କଲେ ତାହା ଫଳପ୍ରଦ ହୁଏ ନାହିଁ ।

ଜପାନୁଷ୍ଠାନ କାଳରେ ପ୍ରତ୍ୟେକ ଦିନ ନିର୍ଦ୍ଦିଷ୍ଟ ସଂଖ୍ୟକ ଜପ ନିଶ୍ଚିତ ହେବା ଆବଶ୍ୟକ । ଏହି ସଂଖ୍ୟା ପୂର୍ଣ୍ଣ କରିବା ପାଇଁ ଅନୁଷ୍ଠାନରେ ଉତ୍ସାହ ଏବଂ ସାତତ୍ୟ ରକ୍ଷା କରିବା ପାଇଁ, ପ୍ରମାଦ ମୁକ୍ତ ହେବା ପାଇଁ ମାଳା ଅତ୍ୟନ୍ତ ସହାୟକ । ଜପ କରୁ କରୁ ମନ ଯଦି ଅନ୍ୟତ୍ର ଚାଲିଯାଏ ବା ତନ୍ଦ୍ରା ଆସେ, ମାଳା ସେ ସମୟରେ ଅଟକି ଯାଏ । ଯଦି ମାଳା ଚାଲିଛି, ତେବେ ଜିଭରେ ମଧ୍ୟ ଜପ ଚାଲୁଥିବ, ଆଉ ଏଣେ ତେଣେ ଘୂରି ବୁଲୁଥିବା ମନ ଅବିଳମ୍ବେ ପୁନଃ ଟାଣି ହୋଇ ଆସିବ । ଉଭୟ ମାଳା ଏବଂ ଜିଭ ଯଦି ଘୁରୁଛନ୍ତି, ବାହାରେ ବୁଲୁଥିବା ମନଃ ପୁଣି ନିଜ ସ୍ଥିର ଅଂଶକୁ ଫେରିଆସେ, ଯାହାକି ମୂର୍ଚ୍ଛିତ ରୂପରେ ଜିଭ ଓ ମାଳାକୁ ଚଳାଇବାରେ ସହାୟକ ହେଉଥିଲା । ମାଳା ଓ ଜିଭକୁ ଚଳାଇବା ପାଇଁ ଯେଉଁ ଶ୍ରଦ୍ଧା ଏବଂ ବିଶ୍ୱାସର ଶକ୍ତି କାମ କରେ ସେହି ଶକ୍ତି ଦିନେ ଅବଶ୍ୟ ଆତ୍ମପ୍ରକାଶ କରିବ ଏବଂ ଜାଗ୍ରତ ହେବ ।

ମାଳା ଏତେ ବଡ଼ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରୁଥିବା ବେଳେ ତାକୁ ଆଦର ପୂର୍ବକ ବିଚାର ନ କରି ଏକ ସାଧାରଣ ବସ୍ତୁ ରୂପେ ଗ୍ରହଣ କରି କେବଳ ସଂଖ୍ୟା ଗଣନା ପାଇଁ ଏକ ମାଧ୍ୟମ ବୋଲି ଭାବନା କରିବା, ଏକ ସାମାନ୍ୟ ବସ୍ତୁ ପରି ଅଶୁଦ୍ଧ ଅବସ୍ଥାରେ ରଖିବା, ବାମ ହସ୍ତରେ ଘୁରାଇବା, ଲୋକ ଦେଖାଣିଆ ମାଳା ବୁଲାଇବା, ପାଦ ପର୍ଯ୍ୟନ୍ତ ମାଳାକୁ ଓହଳାଇ ରଖିବା, ଯେ କୌଣସି ସ୍ଥାନରେ ପକାଇ ରଖିବା ଇତ୍ୟାଦି ଶ୍ରଦ୍ଧା ଏବଂ ବୁଦ୍ଧିମତ୍ତାର ଅଭାବକୁ ବୁଝାଇଥାଏ ।

ମାଳା ତିନି ପ୍ରକାର, ଯଥା :- କରମାଳା, ବର୍ଣ୍ଣମାଳା ଓ ମଣିମାଳା । ଆଙ୍ଗୁଳିରେ ଗଣନା କରି ଯେଉଁ ଜପ କରାଯାଏ ତାହା କରମାଳା ଜପ । ବର୍ଣ୍ଣମାଳା ହେଲା ଅକ୍ଷର ସାହାଯ୍ୟରେ ଜପ ସଂଖ୍ୟା ଗଣନା କରିବା । ମଣି ସଦୃଶ ମୂଲ୍ୟବୋଧ ରଖି ଯେଉଁ ବସ୍ତୁକୁ ଏକାଠି ସୂତାରେ ଗୁନ୍ଥି ଜପ ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ, ସେହି ମାଳାର ନାମ ମଣିମାଳା ।

ଅନୁଷ୍ଠାନ ସମୟରେ ଏହି ମଣିମାଳା ବ୍ୟବହାର କରିବା ହିତକର ଏବଂ ସରଳ । ଏହି ମାଳା ଅନେକ ପ୍ରକାର ପଦାର୍ଥରେ ତିଆରି କରାଯାଇଥାଏ ଯଥା : ରୁଦ୍ରାକ୍ଷ, ତୁଳସୀ, ଶଙ୍ଖ, ପଦ୍ମବୀଜ, ମୋତି, ସ୍ଫଟିକ, ମଣି, ସୁନା, ରୁପା, ଚନ୍ଦନ, କୁଶମୂଳ ଇତ୍ୟାଦି । ସୂତା ଏବଂ ଊଲରେ ତିଆରି ହୋଇଥିବା ମାଳା ମଧ୍ୟ ଉପଯୋଗ ହୁଏ ।

ସମସ୍ତ ପ୍ରକାର ଜପରେ ୧୦୮ ଦାନା (ଗୁଟି ବା ମଣି) ବିଶିଷ୍ଟ ମାଳାର ଉପଯୋଗ କରାଯାଏ ।

ମାଳାର ଦାନାଗୁଡ଼ିକ କୌଣସି ଏକ ବସ୍ତୁରେ ତିଆରି ହୋଇଥିବ ଏବଂ ସେଗୁଡ଼ିକର ଆକୃତି ସମାନ ହୋଇଥିବ ଅର୍ଥାତ୍ ଛୋଟ, ବଡ଼ ଅଥବା ଖଣ୍ଡିତ ହୋଇ ନ ଥିବା ଉଚିତ ।

ବୈଷ୍ଣବମାନଙ୍କ ପାଇଁ ତୁଳସୀ ମାଳା ଏବଂ ସ୍ମାର୍ତ୍ତ, ଶାକ୍ତ ଆଦିଙ୍କ ପାଇଁ ରୁଦ୍ରାକ୍ଷ ମାଳା ସର୍ବୋତ୍ତମ ଅଟେ । ବ୍ରାହ୍ମଣ କନ୍ୟାଙ୍କ ଦ୍ୱାରା ପ୍ରସ୍ତୁତ ସୂତାର ମାଳା ମଧ୍ୟ ଅତି ଉତ୍ତମ ।

ଶାନ୍ତିକର୍ମ ପାଇଁ ଧଳା, ବଶୀକରଣ ପାଇଁ ଲାଲ, ଅଭିଚାର ଅର୍ଥାତ୍ ଅନିଷ୍ଟ କରିବା ପାଇଁ କଳା, ମୋକ୍ଷ ତଥା ଐଶ୍ୱର୍ଯ୍ୟ ଉଦ୍ଦେଶ୍ୟରେ ରେଶମ ସୂତାର ମାଳା ବିଶେଷ ଉପଯୋଗୀ ।

ମାଳା ଗଡ଼ାଇବା ସମୟରେ ତର୍ଜନୀ ଆଙ୍ଗୁଳି (ବିଷି ଆଙ୍ଗୁଳି) ମାଳାକୁ ସ୍ପର୍ଶ କରିବ ନାହିଁ । ଜପମାଳାର ମୂଳଗଣ୍ଠି ବା ମେରୁକୁ ଉଲଙ୍ଘନ କରିବା ଅନୁଚିତ । ମାଳା ଗଡ଼ାଉ ଗଡ଼ାଉ ଯେତେବେଳେ ମେରୁ ପହଞ୍ଚିବ, ମାଳାକୁ ଓଲଟାଇ ଗଡ଼ାଇବା ଆରମ୍ଭ କରିବ ଅର୍ଥାତ୍ ଯେଉଁ ଦାନାରେ ମାଳା ଶେଷ ହୋଇଥିଲା ସେହି ଦାନାରୁ ପୁନଃ ମାଳା ଆରମ୍ଭ ହେବ ।

ଧ୍ୟାନ ରଖିବାକୁ ହେବ ଯେ ମାଳା ଯେପରି ଶରୀରର ଅଶୁଦ୍ଧ ଅଙ୍ଗରେ ସ୍ପର୍ଶ ନ ହୁଏ । ଶରୀରରେ ନାଭିରୁ ନିମ୍ନ ଭାଗକୁ ଅଶୁଦ୍ଧ ବିବେଚନା କରାଯାଏ । ତେଣୁ ମାଳା ଗଡ଼ାଇବା ସମୟରେ ମାଳା ନାଭିରୁ ତଳକୁ ଏବଂ ଭୂମିକୁ ସ୍ପର୍ଶ କରିବା ଉଚିତ ନୁହେଁ ।

ମାଳାକୁ ସ୍ୱଚ୍ଛ ବସ୍ତ୍ର ଭିତରେ ରଖି ଗଡ଼ାଇବା ଉଚିତ । ଗୋମୁଖୀ ଭିତରେ ମାଳା ରଖି ଜପ କରିବା ସର୍ବୋତ୍ତମ ।

## ଜପସଂଖ୍ୟା

ନିଜ ଇଷ୍ଟମନ୍ତ୍ର ବା ଗୁରୁମନ୍ତ୍ରରେ ଯେତୋଟି ଅକ୍ଷର ରହିଛି, ସେତିକି ଲକ୍ଷ ମନ୍ତ୍ର ଜପ କଲେ ସେହି ମନ୍ତ୍ର ଅନୁଷ୍ଠାନ ପୂର୍ଣ୍ଣତା ଲାଭ କରେ । ମନ୍ତ୍ର ଜପ ହେଲା ପରେ ତା'ର ଦଶାଂଶ ସଂଖ୍ୟାରେ ହବନ କରିବାକୁ ହୁଏ । ହବନରେ ପ୍ରତ୍ୟେକ ମନ୍ତ୍ରୋଚ୍ଚାରଣ ସହ ଅଗ୍ନିରେ ଆହୁତି ଦାନ କରାଯାଏ । ହବନର ଦଶାଂଶ ତର୍ପଣ, ତର୍ପଣର ଦଶାଂଶ ମାର୍ଜନ ଏବଂ ମାର୍ଜନର ଦଶାଂଶ ବ୍ରହ୍ମଭୋଜନ କରାଯାଏ ।

ମନେକର ଆମର ମନ୍ତ୍ର ହେଉଛି ଏକ ଅକ୍ଷର । ତେବେ ଏହାର ଅନୁଷ୍ଠାନ ନିମିତ୍ତ ଏକ ଲକ୍ଷ ମନ୍ତ୍ର ଜପ କରିବା ଉଚିତ । ଦଶ ହଜାର ହବନ, ଏକ ହଜାର ତର୍ପଣ, ଏକ ଶହ ମାର୍ଜନ ଏବଂ ଦଶ ସଂଖ୍ୟାର ବ୍ରହ୍ମଭୋଜନ କରିବା ବିଧି ରହିଛି ।

ଯଦି ହବନ, ତର୍ପଣ, ବ୍ରହ୍ମଭୋଜନାଦି କରିବାରେ ଅସମର୍ଥ ହୁଅ ବା ଅନୁକୂଳତା ନାହିଁ, ଆର୍ଥିକ ସ୍ଥିତି ଦୁର୍ବଳ ଅଟେ ତେବେ ହବନ, ତର୍ପଣ, ମାର୍ଜନ, ବ୍ରହ୍ମଭୋଜନ ବଦଳରେ ସେତିକି ସଂଖ୍ୟକ ଅଧିକ ଜପ ଅନୁଷ୍ଠାନ କଲେ କାମ ଚଳିବ । ଏହାର ଅର୍ଥ ନୁହେଁ ଯେ ଆର୍ଥିକ ସୁବିଧା ଥିବା ସତ୍ତ୍ୱେ ଦରିଦ୍ର ପରି ଅନୁଷ୍ଠାନ କରିବ ।

ଯଦି ଏକ ଅକ୍ଷର ବିଶିଷ୍ଟ ମନ୍ତ୍ର ହୁଏ, ତେବେ ୧୦୦୦୦୦ (ମନ୍ତ୍ର)+ ୧୦୦୦୦(ହବନ)+୧୦୦୦(ତର୍ପଣ)+୧୦୦(ମାର୍ଜନ)+୧୦(ବ୍ରହ୍ମଭୋଜନ) =୧୧୧୧୧୦ ମନ୍ତ୍ରଜପ କଲେ ପୂର୍ଣ୍ଣ ବିଧି ପାଳନ ହେଲା ବୋଲି ଗ୍ରହଣ କରାଯାଏ । ଆପଣଙ୍କ ମନ୍ତ୍ରରେ ଯେତୋଟି ଅକ୍ଷର ଥିବ, ସେହି ସଂଖ୍ୟା ସହ ୧୧୧୧୧୦କୁ ଗୁଣନ କରି ସେତିକି ସଂଖ୍ୟା ଜପ ଅନୁଷ୍ଠାନ ହେବ ।

ଜପ ଅନୁଷ୍ଠାନ ପ୍ରାରମ୍ଭରେ ପ୍ରତ୍ୟେକ ଦିନ ପାଇଁ ଉଦ୍ଦିଷ୍ଟ ଜପ ସଂଖ୍ୟା ପୂର୍ବରୁ ନିର୍ଣ୍ଣୟ କରିବା ଉଚିତ । ମୋଟ ଜପସଂଖ୍ୟା କେତେ ଦିନରେ ପୂରଣ ହେବ ତାର ହିସାବ ଅନୁଯାୟୀ ଦୈନିକ ଜପସଂଖ୍ୟା ନିର୍ଦ୍ଧାରିତ ହେବ । କେତେ ମାଳାରେ

ସେହି ସଂଖ୍ୟା ପୂରଣ ହେଉଛି ତାହା ହିସାବ କରି ନିଅନ୍ତୁ ଏବଂ ଦିନରେ କେତେ ମାଳା ହେବ ତାକୁ ନିର୍ଣ୍ଣୟ କରନ୍ତୁ । ଦିନ ମଧ୍ୟରେ ସକାଳ, ଦ୍ୱିପ୍ରହର, ସନ୍ଧ୍ୟା ଏବଂ ରାତ୍ରିର ଜପ ସଂଖ୍ୟା ନିଶ୍ଚିତ କରିଦେଲେ ଅନୁଷ୍ଠାନ ସହଜ ଓ ଶୃଙ୍ଖଳିତ ହେବ ।

ପ୍ରତିଦିନ ସମାନ ସଂଖ୍ୟାରେ ଜପ କରନ୍ତୁ । ଦିନେ ୧୨୦ ମାଳା ତ ଦ୍ୱିତୀୟ ଦିନ ୧୪୦ ମାଳା, ତୃତୀୟ ଦିନ ୧୧୦ ମାଳା... ଏପରି କରିବା ଠିକ୍ ନୁହେଁ । ଅନୁଷ୍ଠାନର ସବୁ ଦିନର ଜପ ସଂଖ୍ୟା ସମାନ ହେବା ଜରୁରୀ ଅଟେ । ହଁ, ଏହି ବିଧାନ କେବଳ ଆସନରେ ବସି ଜପ କରିବା ପାଇଁ ଉଦ୍ଦିଷ୍ଟ, କିନ୍ତୁ ଚାଲବୁଲ କରିବା ସମୟରେ, ବସିବା ଉଠିବା, ଖାଇବା ପିଇବା, ଶ୍ୱାସ ସହିତ ଯଦି ମାନସିକ ଜପ କରନ୍ତି, ତେବେ ଗଣିବା ଅନାବଶ୍ୟକ । ଏହି ପ୍ରକାର ମାନସିକ ଜପରେ **ଅଧିକସ୍ୟ ଅଧିକଂ ଫଳମ୍** । ଯେତେ ଅଧିକ ହୋଇପାରେ ସେତେ ଭଲ । **ସ୍ତୋତ୍ରପାଠ ମାନସିକ ରୂପେ କରାଗଲେ ଯେପରି ତାର ଫଳ ହୁଏ ନାହିଁ; ଅନୁଷ୍ଠାନରେ ଉଚ୍ଚ ସ୍ୱରରେ ପାଟିକରି ମନ୍ତ୍ରଜପ କରାଗଲେ ସେହିପରି ଫଳ ମିଳେ ନାହିଁ ।**

ଜପ ଅତି ଶୀଘ୍ର ଶୀଘ୍ର ଅଥବା ଅତି ଧୀରେ ଧୀରେ କରିବା ଉଚିତ ନୁହେଁ । ଜପକୁ ଗାଇବା, ଜପ ସମୟରେ ମୁଣ୍ଡ ହଲାଇବା, ଲେଖିକରି ପଢ଼ିବା, ମନ୍ତ୍ରର ଅର୍ଥ ନ ଜାଣିବା ଏବଂ ମଝିରେ ଜପ ଭୁଲିଯିବା (ମନୋରାଜ) ଇତ୍ୟାଦି ମନ୍ତ୍ରସିଦ୍ଧିର ପ୍ରତିବନ୍ଧକ ।

ଜପ ସମୟରେ ଇଷ୍ଟଦେବତା, ମନ୍ତ୍ର ଏବଂ ଗୁରୁଦେବଙ୍କୁ ଏକ ବା ଅଭିନ୍ନ ରୂପେ ଚିନ୍ତନ କରିବା ଆବଶ୍ୟକ ।

## ଭୋଜନ

ଅନୁଷ୍ଠାନ ଦିନମାନଙ୍କରେ ଭୋଜନ ବିଲ୍‌କୁଲ୍ ସାଦା, ସାତ୍ତ୍ୱିକ, ହାଲୁକା ଓ ପୁଷ୍ଟିକର ହେବା ଅତ୍ୟନ୍ତ ଜରୁରୀ । ପେଟ ଓଜନିଆ ହେଲା ପରି ଅଧିକ ଏବଂ ବିଶେଷ ଗରିଷ୍ଠ ଭୋଜନ କରିବା ଅନୁଚିତ । ଭୋଜନ ଅତି କମ୍ ପରିମାଣରେ ମଧ୍ୟ ହେବା ଠିକ୍ ନୁହେଁ । ଯଦ୍ଦ୍ୱାରା ଭୋକ ଜନିତ ଦୁର୍ବଳତାରୁ ଜପ ସମୟରେ ମୁଣ୍ଡ

ଘୁରାଇବା ବା ଅବସନ୍ନତା ଆସିବ ! କୋଷ୍ଠକାଠିନ୍ୟ କଲା ଭଳି, ତାମସିକ, ରାଜସିକ ଏବଂ ଅଭକ୍ଷ୍ୟ ଭକ୍ଷଣ ସର୍ବଦା ପରିତ୍ୟାଜ୍ୟ । ଅଣ୍ଡା-ମାଛ ଆଦି ତ ଦୂରର କଥା, ରସୁଣ, ପିଆଜ, ବିଟ୍ ଆଦି ଖାଦ୍ୟ ପଦାର୍ଥ ମଧ୍ୟ ଅନୁଷ୍ଠାନ ସମୟରେ ଖାଇବା ଅନୁଚିତ । ପିଆଜ, ରସୁଣ, ଛଣାଛଣି ଖାଦ୍ୟ, ଡେରିରେ ହଜମ ହେଉଥିବା (ଗରିଷ୍ଠ) ଖାଦ୍ୟ ସାଧନା ନିମନ୍ତେ ହାନିକାରକ ଅଟେ । ଏ ସବୁ ଚିତ୍ତର ଶାନ୍ତି ଓ ପ୍ରସନ୍ନତାକୁ ଭଙ୍ଗ କରେ ।

ବାସି ଭୋଜନ କରିବା ମଧ୍ୟ ଅନୁଚିତ । ଭୋଜନ ପ୍ରସ୍ତୁତ କରାଯାଇଥିବ ସକାଳ ଆଠଟାରେ ଏବଂ ସେହି ଖାଦ୍ୟ ଯଦି ଦିବା ଗୋଟାଏ ବେଳେ ଖିଆଯାଏ, ତାହା ତାମସିକ ଖାଦ୍ୟ ବୋଲି ଜାଣିବାକୁ ହେବ । **ଭୋଜନ ତିଆରି ହେବାର ତିନି ଘଣ୍ଟା ମଧ୍ୟରେ ଖାଇବା ଉଚିତ ।** ଯେଉଁମାନେ ଦୁଇ ଚାରି ଦିନ ପାଇଁ ତିଆରି କରି ଫ୍ରିଜ୍‌ରେ ରଖି ବାସି କରି ଖାଆନ୍ତି ସେମାନଙ୍କ ଜୀବନ ବଡ଼ ଅଶାନ୍ତ ଓ ଅତୃପ୍ତ ରହେ । ପ୍ରଚୁର ପରିମାଣର ଭୋଗ୍ୟ ସାମଗ୍ରୀ ରହିଛି ଅଥଚ ଶାନ୍ତି ନାହିଁ । ବିଦେଶରେ ଜୀବନ ଠିକ୍ ସେହି ଢଙ୍ଗର । ଶାନ୍ତି ପାଇବାର କୌଶଳ ଲୋକମାନେ ଜାଣନ୍ତି ନାହିଁ । **ଯନ୍ତ୍ରର 'ଟେକନିକ୍'କୁ ସେମାନେ ବେଶ୍ ଜାଣନ୍ତି କିନ୍ତୁ ମନ୍ତ୍ର ଏବଂ ଶାନ୍ତିର 'ଟେକନିକ୍'କୁ ବିଚାରା ଜାଣନ୍ତି ନାହିଁ ।**

ଭୋଜନ ଏବଂ ଖାଦ୍ୟରେ କେତେକ ପ୍ରକାରର ଦୋଷ ଦେଖାଯାଏ । ଅନ୍ନର ସବୁ ଠାରୁ ବଡ଼ ଦୋଷ ହେଲା ନ୍ୟାୟୋପାର୍ଜିତ ନ ହେବା । ଯେଉଁ ଲୋକ ଚୋରୀ, ଡକେୟତି, ବେଇମାନୀ, ଅନ୍ୟାୟ ଆଦି କରି ଜୀବନ ନିର୍ବାହ କରନ୍ତ, ଅର୍ଥ ରୋଜଗାର କରନ୍ତି, ତା' ମୂଳରେ ରହିଛି ଅଶୁଦ୍ଧ ଭାବନା । ଏଣୁ ସେହି ଭୋଜନ ସର୍ବଦା ଦୂଷିତ ଅଟେ । **ଯେପରି ଅନ୍ନ ସେପରି ମନ ।** ଏପରି ଦୂଷିତ ଭୋଜନ ଦ୍ୱାରା ଶୁଦ୍ଧ ଚିତ୍ତ ନିର୍ମାଣ ହେବା ଅସମ୍ଭବ ।

ନିଜ ଖାଦ୍ୟ ସଂଗ୍ରହ ପାଇଁ ଅନ୍ୟ ମନକୁ ଯଦି ପୀଡ଼ା ଦିଆଯାଏ, ସେହି ଖାଦ୍ୟ କିପରି ନିଜ ମନକୁ ଶାନ୍ତି ଦେଇ ପାରିବ ? ପେଟପୂରା ଖାଦ୍ୟ ନ ପାଇ ଯେଉଁ ଗାଈର ବାଛୁରୀ ଛଟପଟ ହେଉଛି, ଗାଈର ଆଖିରୁ ଲୁହ ଝରୁଛି, ସେହି

ଗାଈର ଦୁଗ୍ଧ ଯେବେ ନ୍ୟାୟୋପାର୍ଜିତ ଧନରେ ଲାଭ କରାଗଲେ ସୁଦ୍ଧା ଚିତ୍ତକୁ ଶୁଦ୍ଧ ଏବଂ ପ୍ରସନ୍ନ ରଖିବାରେ ତାହା ଉପଯୋଗୀ ହୋଇପାରେ ନାହିଁ । ଯେଉଁ ଭୋଜନ ଗ୍ରହଣ କରିବା ପାଇଁ କାହାର ଅଧିକାରକୁ ଛିନ୍ନ କରିବାକୁ ହୁଏ, କାହାର ମନରେ କଷ୍ଟ ଦେବାକୁ ପଡ଼େ ସେହି ଭୋଜନରେ ଖିନ୍ନତା ବା ଦୁଃଖର ବୀଜ ରହିଥାଏ ।

ଯଦି କୌଣସି ବ୍ୟକ୍ତି ଦୂଷିତ କର୍ମ କରି, ଅନ୍ୟାୟ ଏବଂ ଧୋକାବାଜ ଦ୍ୱାରା ଅର୍ଜନ କରିଥିବା କିଛି ପଦାର୍ଥ ଆମକୁ ଦେଇଗଲା ଏବଂ ସେହି ପଦାର୍ଥ ଆମେ ଭୋଜନ କରି ଭଜନ କରୁ ତାହା ନିମିତ୍ତ ଦୋଷ ହେତୁ ଭଲ ଫଳ ଦେବ ନାହଁ ।

ବିନା ପରିଶ୍ରମରେ ମିଳିଥିବା ଭୋଜନ ମଧ୍ୟ ଠିକ୍ ନୁହେଁ । ସାଧୁତା, ସନ୍ନ୍ୟାସ ବା ବାସନା ବିନା ମଣିଷ ଯଦି ବିନା ଶ୍ରମରେ ଭୋଜନ କରେ ତା'ର ତେଜ କମିବାରେ ଲାଗିବ । ଯଦି ସାଧକ ହୋଇଥିବ, ସେ ସାଧନା ରୂପୀ ପରିଶ୍ରମ କରିବା ଉଚିତ । ସେହିପରି ଯଦି ବ୍ରହ୍ମଚାରୀ ହୋଇଥାଅ, ନିଷ୍ଠାର ସହ ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରିବାକୁ ହେବ । ତାଙ୍କ ପାଇଁ ପରିଶ୍ରମ ବା ଚାକିରୀ-ଧନ୍ଦା ନ କରି ଭୋଜନ ସଂଗ୍ରହ କଲେ ମଧ୍ୟ ଦୋଷ ହେବ ନାହିଁ । କିନ୍ତୁ ଯେ ସନ୍ନ୍ୟାସୀ ନୁହେଁ, ବ୍ରହ୍ମଚାରୀ ନୁହେଁ କି ସାଧନା କରେ ନାହିଁ, ସେ ଅନ୍ୟ ଉପାର୍ଜିତ ଭୋଜନକୁ ଖାଇଲେ ତେଜହୀନ ହୋଇଯାଏ; ତା'ର ତମୋଗୁଣ ବଢ଼େ । ସେ ପ୍ରମାଦୀ ଏବଂ ଆଳସ୍ୟ ପରାୟଣ ହୁଏ । ତାର ଚିତ୍ତର ମଳ ଦୂର ହେବା ଅତି କଠିନ ।

ଭୋଜନରେ ତିନି ପ୍ରକାରର ଦୋଷ ଦେଖାଯାଏ । ଯଥା : ଜାତି ଦୋଷ, ନିମିତ୍ତ ଦୋଷ ଏବଂ ଆଶ୍ରୟ ଦୋଷ । ସାଧକକୁ ଏହି ତ୍ରିବିଧ ଦୋଷ ଠାରୁ ଦୂରେଇ ରହିବାକୁ ହେବ ।

ଯେଉଁ ଭୋଜନ ସ୍ୱଭାବତଃ ଦୂଷିତ, ତାହା ଜାତିଦୋଷ ଅନ୍ତର୍ଗତ । ଯେପରି ମାଂସ, ମାଛ, ଅଣ୍ଡା, ରସୁଣ, ପିଆଜ ଆଦି । ଦ୍ୱିତୀୟଟି ହେଲା ନିମିତ୍ତ ଦୋଷ । ନିଜେ ପରିଶ୍ରମ କରି, ଚାକିରୀ କରି, ଖାଦ୍ୟ ସଂଗ୍ରହ କରିଛନ୍ତ । ନିଜେ

ଖାଦ୍ୟ ସାମଗ୍ରୀ ଆଣିଛନ୍ତି, ଘରେ ଖାଦ୍ୟ ପ୍ରସ୍ତୁତ ହୋଇଛି, ଖାଦ୍ୟ ମଧ୍ୟ ସାତ୍ତ୍ୱିକ ଅଟେ କିନ୍ତୁ ଖାଦ୍ୟକୁ ଯେ ତିଆରି କରିଛନ୍ତି ତାଙ୍କର ହାତ ଯଦି ଅଶୁଦ୍ଧ, ସେ ଯଦି ମାସିକ ଧର୍ମ କାଳରେ ଖାଦ୍ୟ ପ୍ରସ୍ତୁତ କରିଥାନ୍ତି ବା ତାଙ୍କ ଦୃଷ୍ଟି ଖାଦ୍ୟ ପଦାର୍ଥ ଉପରେ ପଡ଼ିଥାଏ । ତାହା ଶାନ୍ତି ପରିବର୍ତ୍ତେ ଅଶାନ୍ତିର କାରଣ ହୁଏ । ସେହିପରି ଭୋଜନକୁ କୁଆ, କୁକୁର, ବିଲେଇ ସ୍ପର୍ଶ କରିଛନ୍ତି ତେବେ ତାହା ଅପବିତ୍ର ହୋଇଯାଏ । ଏ ପ୍ରକାର ଭୋଜନ ନିମିତ୍ତ ଦୋଷ ଅନ୍ତର୍ଗତ ଅଟେ ।

ଭୋଜନକୁ କୁଆ, କୁକୁର, ବିଲେଇ ଛୁଇଁ ନାହାନ୍ତି, ମାସିକ ଧର୍ମ ପାଳନ କରିବା ବ୍ୟକ୍ତି ତିଆରି କରି ନାହାନ୍ତି, ଭୋଜନ ନିଜ ପରିଶ୍ରମ ଉପାର୍ଜିତ ଏବଂ ସାତ୍ତ୍ୱିକ ଅଟେ, କିନ୍ତୁ ସେହି ଭୋଜନକୁ ଯଦି ଆମେ ଶ୍ମଶାନରେ ପ୍ରସ୍ତୁତ କରିଛନ୍ତି, ତେବେ ସେ ଖାଦ୍ୟ ଅପବିତ୍ର ହୋଇଗଲା । ଭୋଜନର ଆଶ୍ରୟ ଅଶୁଦ୍ଧ ହୋଇଗଲା । ଦୂଷିତ ଓ ଅପବିତ୍ର ସ୍ଥାନ ହେତୁ ଭୋଜନ ଅପବିତ୍ର ହୋଇଗଲା । ଏହା ଭୋଜନର ଆଶ୍ରୟ ଦୋଷ । ଶୁଦ୍ଧ ଦୁଗ୍ଧ ମଧ୍ୟ ମଦଭାଟିରେ ଥିଲେ ଅଶୁଦ୍ଧ ହୋଇଯାଏ । ଏଥିପାଇଁ ପୂର୍ବ କାଳରେ ଅନ୍ୟ ସ୍ଥାନ ଲିପାପୋଛା କରନ୍ତୁ ବା ନ କରନ୍ତୁ କିନ୍ତୁ ରୋଷେଇ ଘର ନିଶ୍ଚିତ ଲିପାପୋଛା କରି ରୋଷେଇ କରାଯାଉଥିଲା । ସ୍ଥାନକୁ ପବିତ୍ର କରି ରୋଷେଇ କରାଯାଉଥିଲା । ଏହି କଥା ପ୍ରତି ଯଦି ସାମାନ୍ୟ ଦୃଷ୍ଟି ଦିଆଯାଏ କିଛି ଦିନ ଭିତରେ ଜଣେ ମନ୍ତ୍ରର ଚମତ୍କାରକୁ ଅନୁଭବ କରିପାରେ ।

ଭୋଜନର ରସରେ ହିଁ ଶରୀର, ପ୍ରାଣ ଓ ମନ ତିଆରି ହୁଏ । ଯେ ଅଶୁଦ୍ଧ ଭୋଜନ କରେ ତା'ର ଶରୀରରେ ରୋଗ, ପ୍ରାଣରେ କ୍ଷୋଭ ଏବଂ ଚିତ୍ତରେ ଗ୍ଲାନି ବଢ଼େ । ଖିନ୍ନ ଚିତ୍ତରେ ମନ୍ତ୍ରଦେବତାଙ୍କର ପ୍ରସାଦର ପ୍ରାଦୁର୍ଭାବ ହୁଏ ନାହିଁ ।

## ମୌନ

ଜପାନୁଷ୍ଠାନ ଚାଲିଥିବା ଦିନମାନଙ୍କରେ ବିଲ୍‌କୁଲ୍ ମିତଭାଷୀ ହେବା ଅତ୍ୟନ୍ତ ଜରୁରୀ । ତିନୋଟି ଶବ୍ଦ ବୋଲିବା ଦ୍ୱାରା ଯଦି କର୍ମ ସମ୍ପାଦନ ହୋଇ ଯାଉଛି ତେବେ ଚାରୋଟି ଶବ୍ଦ କହିବା ଅନାବଶ୍ୟକ । ଆବଶ୍ୟକତା ଠାରୁ ଅଧିକ ନ କହିବା ହିଁ ବାସ୍ତବ ମୌନ । ଯଦି ସମ୍ଭବ ହୁଏ ପୂର୍ଣ୍ଣ ମୌନ ବ୍ରତ ପାଳନ କରିବା ସର୍ବୋତ୍ତମ ।

ଦୁଇ ପ୍ରକାରର ମୌନୀ ମୁନି ଦେଖାଯାଆନ୍ତି । ସେମାନେ ହେଲେ କାଷ୍ଠମୌନୀ ଓ ଜୀବନମୁକ୍ତ । ପରମାତ୍ମ ଭାବନା ଶୂନ୍ୟ ଶୁଷ୍କ କ୍ରିୟାନୁଷ୍ଠାନ କରୁଥିବା ଏବଂ ହଠପୂର୍ବକ ଇନ୍ଦ୍ରିୟମାନଙ୍କୁ ବଶ କରୁଥିବା ମୁନିଙ୍କୁ କାଷ୍ଠମୌନୀ କୁହାଯାଏ । ଏହି ବିନାଶଶୀଳ ସଂସାରର ସ୍ୱରୂପକୁ ଯଥାର୍ଥ ରୂପରେ ଜାଣି ଯେଉଁ ବିଶୁଦ୍ଧାତ୍ମା ପରମାତ୍ମ ଭାବରେ ସ୍ଥିତ ଜ୍ଞାନୀ ମହାତ୍ମା ବାହାର ଲୌକିକ ବ୍ୟବହାର କରି ସୁଦ୍ଧା ଭିତରେ ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କ ଭାବରେ ତୃପ୍ତ ରହନ୍ତି, ତାଙ୍କୁ ଜୀବନ ମୁକ୍ତ ମୁନି କୁହାଯାଏ ।

ମୌନ ବିଷୟରେ ବିଜ୍ଞ ମୁନି ମୌନକୁ ଚାରି ପ୍ରକାର ବୋଲି କହନ୍ତି ଯଥା : ୧) ବାଚିକ ମୌନ ୨) ଇନ୍ଦ୍ରିୟ ମୌନ ୩) କାଷ୍ଠ ମୌନ ୪) ସୁଷୁପ୍ତ ମୌନ ।

ବାଚିକ ମୌନର ଅର୍ଥ ହେଲା ବାଣୀର ନିରୋଧ । ଇନ୍ଦ୍ରିୟ ମୌନର ଅର୍ଥ ହଠପୂର୍ବକ ଇନ୍ଦ୍ରିୟମାନଙ୍କୁ ସ୍ୱବିଷୟରୁ ନିଗ୍ରହ କରିବା । କାଷ୍ଠମୌନର ଅର୍ଥ ହେଲା ସମ୍ପୂର୍ଣ୍ଣ ଚେଷ୍ଟାକୁ ତ୍ୟାଗ କରିବା । ପରମାତ୍ମାଙ୍କ ସ୍ୱରୂପାନୁଭବରେ ଯେଉଁ ଜୀବନମୁକ୍ତ ନିରନ୍ତର ନିମଗ୍ନ ରହନ୍ତି ତାଙ୍କର ସେହି ମୌନାବସ୍ଥାକୁ ସୁଷୁପ୍ତ ମୌନ କୁହାଯାଏ ।

କାଷ୍ଠମୌନରେ ବାଚିକ ଓ ଇନ୍ଦ୍ରିୟ ମୌନ ଅନ୍ତର୍ନିହିତ । ସୁଷୁପ୍ତ ମୌନାବସ୍ଥାରେ ଯେଉଁ ତୁରୀୟାବସ୍ଥା ବିଦ୍ୟମାନ ତାହା ଜୀବନମୁକ୍ତ ପୁରୁଷଙ୍କ ସ୍ଥିତି । ପ୍ରଥମ ତିନି ପ୍ରକାରର ମୌନ ଭକ୍ତ ଏବଂ ସାଧକମାନଙ୍କର ସାଧନା କାଳରେ ଥିବା ଚିତ୍ତର ଅବସ୍ଥା । କିନ୍ତୁ ଚତୁର୍ଥ ଯାହାକୁ ସୁଷୁପ୍ତ ମୌନ କୁହାଯାଏ ତାହା ଜୀବନମୁକ୍ତଙ୍କ ସିଦ୍ଧାବସ୍ଥା । ଏହି ପ୍ରକାରର ମୌନାବସ୍ଥାରେ ପହଞ୍ଚିଥିବା ସିଦ୍ଧ ପୁରୁଷଙ୍କର ପୁନର୍ଜନ୍ମ ହୁଏ ନାହିଁ ।

ସୁଷୁପ୍ତ ମୌନରେ ସମ୍ପୂର୍ଣ୍ଣ ଇନ୍ଦ୍ରିୟ ବୃତ୍ତି ଅନୁକୂଳତାରେ ହର୍ଷିତ ହୁଏ ନାହିଁ କି ପ୍ରତିକୂଳତାରେ ବିଷାଦ ହୁଏ ନାହିଁ । ବିଭାଗରହିତ, ଅଭ୍ୟାସରହିତ ଏବଂ ଆଦି-ଅନ୍ତରହିତ ତଥା ଧ୍ୟାନ କରିବା ଅବସ୍ଥା ହେଉ କି ଧ୍ୟାନ ନ କରିବା ଅବସ୍ଥା ହେଉ ପ୍ରତ୍ୟେକ ସ୍ଥିତିରେ ସମଭାବ ରହିବା ସୁଷୁପ୍ତ ମୌନର ଲକ୍ଷଣ । ଅନ୍ୟ

ପ୍ରକାର ବିଭ୍ରାନ୍ତିକର ସଂସାର ସ୍ୱରୂପକୁ ଏବଂ ପରମାତ୍ମ ତତ୍ତ୍ୱକୁ ଯଥାର୍ଥ ରୂପରେ ଜାଣିବା ଦ୍ୱାରା ଯେଉଁ ସନ୍ଦେହ ରହିତ ସ୍ଥିତି ଲାଭ ହୁଏ ତାହା ସୁଷୁପ୍ତ ମୌନ । 'ଯେଉଁ ସର୍ବଶୂନ୍ୟ, ଅବଲମ୍ବନରହିତ, ଶାନ୍ତିସ୍ୱରୂପ, ସର୍ବାତ୍ମକ ତଥା ସତ୍ତାସାମାନ୍ୟ ରୂପ ପରମାତ୍ମା ବିଦ୍ୟମାନ ସେ ହେଉଛନ୍ତି ପ୍ରକୃତରେ ମୁଁ ' ଏହି ପ୍ରକାର ବୋଧରୂପ ବା ଜ୍ଞାନାବସ୍ଥାକୁ ସୁଷୁପ୍ତ ମୌନ କୁହାଯାଏ ।

ଜାଗ୍ରତାବସ୍ଥାରେ ସର୍ବଥା ଯଥାଯୋଗ୍ୟ ବ୍ୟବହାର କରି ସୁଦ୍ଧା ଅଥବା ସବୁ ବ୍ୟବହାର ତ୍ୟାଗ କରି ସମାଧିରେ ସ୍ଥିତ ଜୀବନମୁକ୍ତ ଦେହ ଧାରଣ କରି ସୁଦ୍ଧା ସେ ଶାନ୍ତବୃତ୍ତିଯୁକ୍ତ ତୁରୀୟାବସ୍ଥାରେ ହିଁ ସଦା ସ୍ଥିତ ହୋଇଥିବା ହେତୁ ପ୍ରକୃତରେ ବିଦେହରୂପ ଅଟନ୍ତି ।

ଏହା ଜ୍ଞାନବାନଙ୍କର ନିତ୍ୟ ମୌନ । ଏହାକୁ 'ବେଦାନ୍ତୀ ମୌନ' ବୋଲି କୁହାଯାଇପାରେ । ଆତ୍ମସ୍ୱରୂପରେ, ବ୍ରହ୍ମ-ସ୍ୱରୂପରେ ସଦା ଜାଗ୍ରତ ଥିବା ବୋଧବାନ ଜ୍ଞାନୀ ପୁରୁଷ ଖାଇବା-ପିଇବା, ବସିବା-ଉଠିବା, ଯିବା-ଆସିବା, କଥାବାର୍ତ୍ତା ଇତ୍ୟାଦି କର୍ମ କରିବା ସତ୍ତ୍ୱେ ସେ ଭଲ ରୂପେ ବୁଝି ନେଇଥାନ୍ତି ଯେ ''କହିବା କାମ ବାଣୀର, ଦେବା-ନେବା ହାତର କର୍ମ, ଚାଲବୁଲ କରେ ପାଦ, ସଂକଳ୍ପ-ବିକଳ୍ପ କରେ ମନ ଏବଂ ନିର୍ଣ୍ଣୟ କରେ ବୁଦ୍ଧି । ମୁଁ ଏ ସବୁର ଦର୍ଶକ, ଅଚଳକୂଟସ୍ଥ, ସାକ୍ଷୀ ସତ୍ତା । ମୁଁ କେବେ କିଛି କରେ ନାହିଁ ।''

ଜ୍ଞାନୀ କହିଲେ ସୁଦ୍ଧା କିଛି କହନ୍ତି ନାହିଁ, ନେଲେ ବି ସେ କିଛି ନିଅନ୍ତି ନାହିଁ, ଦେଲେ ସୁଦ୍ଧା କିଛି ଦିଅନ୍ତି ନାହିଁ । ଭଗବାନ ଶ୍ରୀକୃଷ୍ଣଙ୍କ ସମ୍ପୂର୍ଣ୍ଣ ଜୀବନ ମୌନ ଥିଲା । ଦୁର୍ବାସା, କବୀର, ରାମତୀର୍ଥ ଓ ରମଣ ମହର୍ଷିଙ୍କ ଜୀବନ ସେହିପରି ମୌନ ଥିଲା । ଉକ୍ତ ମହାପୁରୁଷଗଣ ପ୍ରତ୍ୟେକ ଠିକ୍ ରୂପେ ଜାଣିଥିଲେ ଯେ 'ମୁଁ ଶରୀର, ପ୍ରାଣ, ବାଣୀ, ଇନ୍ଦ୍ରିୟ, ମନ, ବୁଦ୍ଧି, ଚିତ୍ତ, ଅହଂକାର ଆଦିରୁ ସମ୍ପୂର୍ଣ୍ଣ ପୃଥକ୍ ଆତ୍ମା । ଏହିପରି ଜ୍ଞାନବାନ ପୁରୁଷ ସବୁକିଛି କରି ସୁଦ୍ଧା ଆତ୍ମ-ସମାହିତ । ଏହା ପରମ ମୌନ ।

ଆମେ ଯେ ପର୍ଯ୍ୟନ୍ତ ଏହି ପରମ ମୌନକୁ ଲାଭ କରି ନାହାନ୍ତି ସେ ପର୍ଯ୍ୟନ୍ତ ବାଚିକ ମୌନ, ଇନ୍ଦ୍ରିୟ ମୌନ, କାଷ୍ଠ ମୌନ ଅବଲମ୍ବନ କରିବା ଉଚିତ ।

ଏହା ଦ୍ୱାରା ଆମର ଅଶେଷ କଲ୍ୟାଣ ହେବ । ଅନୁଷ୍ଠାନ ସମୟରେ ମୌନ ରକ୍ଷା କରିବା ଦ୍ୱାରା କଥାବାର୍ତ୍ତା ହେଲେ ଆମର ଯେଉଁ ଶକ୍ତିର ଅପଚୟ ହୋଇଥାଏ ତାହା ଆଉ ହୁଏ ନାହିଁ ଏବଂ ଅନୁଷ୍ଠାନ ସୁଫଳଦାୟୀ ହୁଏ ।

## ବ୍ରହ୍ମଚର୍ଯ୍ୟ ପାଳନ

ସ୍ତ୍ରୀ-ସଂସର୍ଗ, ସେମାନଙ୍କର ବିଷୟରେ ଚର୍ଚ୍ଚା ତଥା ସେମାନେ ଯେଉଁଠାରେ ରହନ୍ତି ସେହି ସ୍ଥାନ ତ୍ୟାଗ କରିବା ଉଚିତ । ଋତୁକାଳ ଅତିରିକ୍ତ ଅନ୍ୟ ସମୟରେ ମଧ୍ୟ ନିଜ ସ୍ତ୍ରୀକୁ ସ୍ପର୍ଶ କରିବା ନିଷିଦ୍ଧ ଅଟେ । ସ୍ତ୍ରୀ ସାଧିକାମାନଙ୍କ ପାଇଁ ମଧ୍ୟ ପୁରୁଷମାନଙ୍କ ସମ୍ପର୍କରେ ଉକ୍ତ ନିୟମ ପାଳନ କରିବା ଉଚିତ । ଅନୁଷ୍ଠାନ ଦିନମାନଙ୍କରେ ଦୃଢ଼ ବ୍ରହ୍ମଚର୍ଯ୍ୟ ପାଳନ ଏକାନ୍ତ ଆବଶ୍ୟକ । ଶରୀର ରୂପୀ ବୃକ୍ଷକୁ ଚିର ହରିତ୍ ରଖିବା ପାଇଁ ଯେଉଁ ରସ ଆବଶ୍ୟକ, ତାହା ହେଲା ବୀର୍ଯ୍ୟ । ଜୀବନରେ ଯାହା କିଛି ତେଜ, ଓଜ, ଉତ୍ସାହ, ପରାକ୍ରମ ଆଦି ଶ୍ରେଷ୍ଠ ଗୁଣ ଦେଖାଯାଏ ସେ ସବୁ ବୀର୍ଯ୍ୟ ଧାରଣର ହିଁ ପରିଣାମ । ଏଣୁ ଏହା ସତ୍ୟ ଯେ :

**ମରଣଂ ବିନ୍ଦୁପାତେନ ଜୀବନଂ ବିନ୍ଦୁଧାରଣାତ୍**

ବୀର୍ଯ୍ୟ ଧାରଣ କରିବା ଜୀବନ ଏବଂ ବୀର୍ଯ୍ୟପାତ କରିବା ମୃତ୍ୟୁ । ଅନୁଷ୍ଠାନ ଦ୍ୱାରା ଯେଉଁ ଜୀବନୀଶକ୍ତିକୁ ଜାଗ୍ରତ କରାଯାଇ ତାକୁ ଠିକ୍ ମାର୍ଗରେ ବିକଶିତ କରି ନିଜ ଆଦର୍ଶରେ ସିଦ୍ଧି ଲାଭ କରିବାକୁ ହୁଏ, ସେହି ଶକ୍ତିକୁ ଯଦି ବ୍ରହ୍ମଚର୍ଯ୍ୟ ଭଙ୍ଗ ଦ୍ୱାରା ନଷ୍ଟ କରାଯାଏ ତାହାଠୁ ବଳି ବିବେକ ହୀନତା ଆଉ କଣ ହୋଇପାରେ ? ବ୍ରହ୍ମଚର୍ଯ୍ୟର ଦୃଢ଼ ପାଳନ ବିନା ଅନୁଷ୍ଠାନର ପୂର୍ଣ୍ଣ ସଫଳତା ଅସମ୍ଭବ ।

ବ୍ରହ୍ମଚର୍ଯ୍ୟବ୍ରତ ଶରୀରକୁ ସାଧନ ନିମନ୍ତେ ଯୋଗ୍ୟତା ପ୍ରଦାନ କରେ । ଶରୀରର ବିନା ସହଯୋଗରେ ମନ ଠିକ୍ ରୂପେ ଜପ କରିପାରେ ନାହିଁ । କାମନା ରହିତ ହେଲେ ଚିତ୍ତ ସାଧନା ପଥରେ ସଠିକ୍ ଗତି କରିପାରେ । କାମ ବାସନା ଆକ୍ରମଣ କରିବା ସମୟରେ **ଭଗବାନ ନୃସିଂହଙ୍କୁ ଚିନ୍ତନ କଲେ କାମରୁ ରକ୍ଷା ମିଳେ ।**

ନୃସିଂହ ଭଗବାନ କାମନାର ମୂର୍ତ୍ତିମାନ ରୂପ ହିରଣ୍ୟକଶିପକୁ ଚିରି ଦେଇଥିଲେ । ଭଗବାନଙ୍କ ଉଗ୍ର ରୂପର ସ୍ମରଣ ଚିନ୍ତନ ଦ୍ୱାରା କାମ ଆବେଗ ଶାନ୍ତ ହୋଇଯାଏ ।

ଅନୁଷ୍ଠାନ ପୂର୍ବରୁ **'ଯୌବନ ସୁରକ୍ଷା'** ପୁସ୍ତକର ଗଭୀର ଅଧ୍ୟୟନ କରିବା ହିତକାରକ । ବ୍ରହ୍ମଚର୍ଯ୍ୟ ରକ୍ଷା ପାଇଁ ନିମ୍ନ ଲିଖିତ ମନ୍ତ୍ର ରହିଛି :

**ଓଁ ନମୋ ଭଗବତେ ମହାବଳେ ପରାକ୍ରମାୟ ମନୋଭିଳାଷିତଂ ମନଃ ସ୍ତମ୍ଭ କୁରୁ କୁରୁ ସ୍ୱାହା ।**

ପ୍ରତ୍ୟେକ ଦିନ ଦୁଗ୍ଧକୁ ଉପରୋକ୍ତ ମନ୍ତ୍ରରେ ଏକୋଇଶ ବାର ମନ୍ତ୍ରିତ କରି ସେହି ଦୁଗ୍ଧ ପାନ କଲେ ବ୍ରହ୍ମଚର୍ଯ୍ୟ ରକ୍ଷା ହୁଏ । ସ୍ୱଭାବରେ ପରିଣତ କରି ହେଲା ଭଳି ଏହା ଏକ ଉତ୍ତମ ନିୟମ ।

ବ୍ରହ୍ମଚର୍ଯ୍ୟ କେବଳ ବୀର୍ଯ୍ୟରକ୍ଷଣ ବା ମୈଥୁନ ତ୍ୟାଗରେ ସୀମିତ ନୁହେଁ । ଅବଶ୍ୟ ଆବଶ୍ୟକତା ଦୃଷ୍ଟିରୁ ଏହା ଅନିବାର୍ଯ୍ୟ । ତେବେ ବ୍ୟାପକ ଅର୍ଥରେ ବ୍ରହ୍ମଚର୍ଯ୍ୟ କହିଲେ ଇନ୍ଦ୍ରିୟ ସମୂହକୁ ବିଷୟରୁ ସଂଯମିତ କରି ମନକୁ ପ୍ରଭୁଙ୍କ ଠାରେ ଲଗାଇବା, ଚିତ୍ତକୁ ପରମାତ୍ମା ଚିନ୍ତନରେ ବା ବ୍ରହ୍ମଚିନ୍ତନରେ ସଂଲଗ୍ନ କରାଇବା । ଏହାକୁ ବିଦ୍ୱାନମାନେ ବ୍ରହ୍ମଚର୍ଯ୍ୟ ରୂପେ ଗ୍ରହଣ କରନ୍ତି ।

### *ଏକାକୀ ଅନୁଷ୍ଠାନ କର*

ବ୍ରହ୍ମଚାରୀ ଏକୁଟିଆ ରହନ୍ତି । ଅନୁଷ୍ଠାନ କରିବାବାଲା ଯଦି ଅବିବାହିତ ଅଟନ୍ତି ଏବଂ ଚିନ୍ତା କରନ୍ତି, ହାୟ ! ମୁଁ ଏକୁଟିଆ ରହିଛି । ମୋର ଜୀବନ ସାଥୀ ନାହିଁ । ପତି-ପତ୍ନୀ ହୋଇଥିଲେ ଆମେ ଦୁହେଁ ମିଳିମିଶି ଧର୍ମ-ପୁଣ୍ୟ, ଉପାସନା ଅନୁଷ୍ଠାନ କରିଥାନ୍ତୁ, ହରି-କଥା, ସତ୍‌ସଙ୍ଗରେ ଯୋଗଦାନ କରିଥାନ୍ତୁ ।''

ପୁରୁଷ ଲୋକ ଭାବେ ''ପତ୍ନୀ ମିଳିଗଲେ ଏକୁଟିଆଭାବ ଦୂର ହୁଅନ୍ତା,'' ସେପରି ସ୍ତ୍ରୀ ଲୋକ ଭାବେ '' ପତି ଯଦି ମିଳି ଯାଆନ୍ତେ ମୁଁ ଏକୁଟିଆ ଅନୁଭବ କରନ୍ତି ନାହିଁ ।'' ନା, ଏପରି କଥା ଠିକ୍ ନୁହେଁ । ଯେଉଁ ଲୋକର ବିଚାର ବିବେଚନା ନାହିଁ , ସେପରି ଅବୁଝାମଣା ବ୍ୟକ୍ତିକୁ ଏକୁଟିଆ ରହିବା ଭାର ବୋଧ ହୁଏ, କିନ୍ତୁ ବିବେକବାନ ସୌଭାଗ୍ୟଶାଳୀ ସାଧକ ନିଜକୁ କେତେବେଳେ ଏକୁଟିଆ ଅନୁଭବ କରନ୍ତି ନାହିଁ । ସେ ନିଜ ଠାରେ ପରମ ଚୈତନ୍ୟଙ୍କ ଉପସ୍ଥିତିକୁ ଉପଲବ୍‌ଧି କରନ୍ତି । ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭ କରି ପରମ ତୃପ୍ତି ଓ ସୁଖ ଅନୁଭବ କରନ୍ତି ।

ପରିଶେଷରେ, ତତ୍ତ୍ୱଜ୍ଞାନ ଦୃଷ୍ଟିରୁ ଯଦି ବିଚାର କରାଯାଏ, ଦେଖାଯିବ ଯେ ଦ୍ୱିତୀୟ ସତ୍ତା ବୋଲି କିଛି ନାହିଁ । କେବଳ ଏକ ଅଦ୍ୱିତୀୟ ଚୈତନ୍ୟ ସତ୍ତା, ଆତ୍ମଦେବ, ସ୍ୱୟଂ ନିଜକୁ ବିଭିନ୍ନ ନାମରେ ରୂପରେ ପ୍ରକଟିତ କରାଇ ଅନନ୍ତ ଲୀଳା କରୁଛନ୍ତି ।

ଅନୁଷ୍ଠାନ କରୁଥିବା ବ୍ୟକ୍ତି ଯଦି ବିବାହିତ ଅଟନ୍ତି, ଗୃହସ୍ଥ ହୋଇଥିଲେ ସୁଦ୍ଧା ଅନୁଷ୍ଠାନ ଏକୁଟିଆ ଏବଂ ଏକାନ୍ତରେ କରିବ ଉଚିତ । ଏପରି ନୁହେଁ ଯେ ପତି ଓ ପତ୍ନୀ ଉଭୟେ ଏକତ୍ର ବସି ଭୋଜନ କରିବେ ।

**ତପଃ ଏକତ୍ୱମ୍** । ତପ ଏକୁଟିଆ କରିବା ଆବଶ୍ୟକ । ପତି-ପତ୍ନୀ ଉଭୟେ ଅନୁଷ୍ଠାନ ଏକ ସମୟରେ କରିପାରନ୍ତି, କିନ୍ତୁ ଅଲଗା ଅଲଗା କରିବା ଠିକ୍ ହେବ । ଯଦି ଅନୁଷ୍ଠାନ ଏକାଠି ବସି କରନ୍ତି, ପତିକୁ ପତ୍ନୀର ଚିନ୍ତା ଏବଂ ପତ୍ନୀକୁ ପତିର ଚିନ୍ତା ଆସିବା ସ୍ୱାଭାବିକ । ଇଷ୍ଟ ମନ୍ତ୍ର ଚିନ୍ତନ, ଇଷ୍ଟଦେବ ଚିନ୍ତନ ଏବଂ ଈଶ୍ୱର ଚିନ୍ତନ ରହିବ ନାହିଁ । ଚିତ୍ତକୁ ବ୍ରହ୍ମଚର୍ଯ୍ୟ-ବ୍ରତରେ ସ୍ଥିତ ଅର୍ଥାତ୍ ବ୍ରହ୍ମରେ ବିଚରଣ କରିବାକୁ ହେବ । ତେଣୁ ତୁମେ ଏକୁଟିଆ ରହି ଯଦି ଅନୁଷ୍ଠାନ କର, ଉପାସନା କର, ମୌନ ରହ, କିଏ କ'ଣ କରୁଛି ଏହି ଚିନ୍ତା ଛାଡ଼ି ପବିତ୍ର ସ୍ଥାନରେ ରହି ଜପ-ତପରେ ମନ ବଳାଅ, ତେବେ ତୁମ ଠାରେ ଥିବା ସୁପ୍ତ ଐଶ୍ୱରୀୟ ଶକ୍ତି, ଆଧ୍ୟାତ୍ମିକ ବଳ ଏବଂ ଗୁପ୍ତ ଇଷ୍ଟଙ୍କ ପ୍ରଭାବ ପ୍ରକଟିତ ହେବ । ଯାହାଙ୍କ ଇଷ୍ଟ ବଳବାନ, ତାଙ୍କର ଅନିଷ୍ଟ ହୁଏ ନାହିଁ ।

ଏକୁଟିଆ ପଣିଆରେ ମନକୁ ବ୍ୟତିବ୍ୟସ୍ତ କରାଅ ନାହିଁ । ପରମାତ୍ମା ସଦା ସର୍ବଦା ମୋ ଠାରେ ବିଦ୍ୟମାନ ଅଛନ୍ତି । ଏହି ବାସ୍ତବତାକୁ ଅନୁଭବ ନ କରିବା ଯାଏ ହୃଦୟରେ ଏହି ଦିବ୍ୟଭାବକୁ ଦୃଢ଼ତାର ସହ ଧାରଣ କର ।

## *ବାସନାରୂପୀ ଦୀପକୁ ଲିଭାଅ*

ଯାହାଙ୍କ ଚିତ୍ତ ବାସନାଯୁକ୍ତ, ସେ ଏକୁଟିଆ ରହିବାରେ ଅସୁଖ ଅନୁଭବ କରନ୍ତି । କିନ୍ତୁ ଯାହାଙ୍କ ଚିତ୍ତରେ ରାଗ, ଦ୍ୱେଷ ଓ ମୋହ ସ୍ଥାନରେ ସତ୍ୟ ପ୍ରତି ପିପାସା ରହିଛି ସେହି ଚିତ୍ତରେ ଆସକ୍ତି ରୂପୀ ତୈଳ ଶୁଖିଯାଏ । ଆସକ୍ତିରୂପୀ

ତେଲ ଯଦି ଶୁଷ୍କ ହୋଇଯାଏ ବାସନାର ଦୀପ ଲିଭିଯାଏ, ବାସନାର ଶିଖା ନିର୍ବାପିତ ହେବା ମାତ୍ରେ ଆତ୍ମଜ୍ଞାନର ଦୀପ ପ୍ରଜ୍ୱଳିତ ହେବାକୁ ଲାଗେ ।

ସଂସାରରେ ବାହ୍ୟ ଦୀପ ନିର୍ବାପିତ ହେଲେ ଅନ୍ଧାର ଆସେ କିନ୍ତୁ ଭିତରର ବାସନା ରୂପୀ ଦୀପ ନିର୍ବାପିତ ହେଲେ ଅନ୍ତର୍ଜ୍ୟୋତି ପ୍ରକଟିତ ହୁଏ । ତେଣୁ ବାସନା ରୂପୀ ଦୀପରେ ଇଚ୍ଛା ରୂପୀ ତେଲ ଢ଼ାଳ ନାହିଁ । ଇଚ୍ଛାକୁ ହଟାଇ ଚାଲ, ଦେଖିବ ବାସନା-ଦୀପ ଲିଭିଯିବ ଏବଂ ଜ୍ଞାନ ଦୀପ ଜଳି ଉଠିବ ।

ବାସନା-ଦୀପ ଲିଭିଲା ପରେ ଯାଇ ଜ୍ଞାନ-ଦୀପ ଜଳିବ, ଏହା ନୁହେଁ । ଜ୍ଞାନଦୀପ ଭିତରେ ସ୍ୱୟଂ ପ୍ରକାଶିତ ହେଉଛି; କିନ୍ତୁ ଆମେ ବାସନାଦୀପକୁ ହିଁ ଦେଖୁଛୁ । ତେଣୁ ଜ୍ଞାନର ଦୀପକୁ ଦେଖିପାରୁ ନାହୁଁ ।

କେତେକ ବ୍ୟକ୍ତି ଜଳକ୍ରୀଡ଼ା ନିମନ୍ତେ ଶରତ ପୂର୍ଣ୍ଣିମା ରାତ୍ରିରେ ଏକ ସରୋବରରେ ନୌକାବିହାର ଆରମ୍ଭ କଲେ । ନୌକା ଆଗକୁ ଚାଲିଥାଏ, କଥାବାର୍ତ୍ତା ଚାଲିଥିବା ଅବସରରେ ଜଣେ କହିଲେ : ''ଶୁଣିଥିଲି, ଚାନ୍ଦିନୀ ରାତ୍ରିରେ ଜଳ ବିହାର କରେ ବଡ଼ ମଜା ଲାଗେ । ପାଣି ଠିକ୍ ଚନ୍ଦ୍ର ଆଲୋକ ପରି ଚକ୍‌ମକ୍ କରେ । ଆକାଶ ଚନ୍ଦ୍ରାଲୋକରେ ସୁଶୋଭିତ ହେଉଥିବା ବେଳେ ଆମକୁ ଚତୁର୍ଦ୍ଦିଗରେ କେବଳ ପାଣି ହିଁ ପାଣି ଦେଖାଯାଉଛି । କାହିଁ ମଜା ଲାଗୁ ନାହିଁ ତ ?'' ନାଉରିଆ ଏହି କଥା ଶୁଣୁଥିଲା । ସେ କହିଲା :

''ଆଜ୍ଞା ଶୁଣନ୍ତୁ । ଚନ୍ଦ୍ରାଲୋକର ମଜା ପାଇବାକୁ ହେଲେ ନୌକାରେ ଜଳୁଥିବା ଲଣ୍ଠନକୁ ଲିଭାଇବାକୁ ହେବ । ଲଣ୍ଠନକୁ ଫୁଙ୍କି ଲିଭାଇ ଦିଅନ୍ତୁ ।''

ଆଲୁଅକୁ ଲିଭାଇବା ମାତ୍ରେ ସାରା ସରୋବର ଚନ୍ଦ୍ରାଲୋକରେ ଚମକିବାକୁ ଲାଗିଲା । ତେବେ ଏହି ଲଣ୍ଠନ ଲିଭାଇବା ପୂର୍ବରୁ ଚନ୍ଦ୍ରମା ନ ଥିଲେ କି ? ଆଖି ଉପରେ ଲଣ୍ଠନର ଆଲୁଅ ପ୍ରଭାବ ପକାଉଥିଲା । ତେଣୁ ଚନ୍ଦ୍ରାଲୋକର ପ୍ରଭାବକୁ ଅନୁଭବ କରି ହେଉ ନ ଥିଲା ।

ଠିକ୍ ଏହି ନ୍ୟାୟରେ ବାସନାର ଆଲୁଅ ଜଳୁଥିବା ଯାଏ ଜ୍ଞାନରୂପୀ ଚନ୍ଦ୍ରମାଙ୍କ ଆଲୋକକୁ ଆମେ ଦେଖିପାରୁ ନାହୁଁ । ଏଣୁ ବାସନାକୁ ପୋଷଣ କର

ନାହିଁ । **ବ୍ରହ୍ମଚାରିବ୍ରତେ ସ୍ଥିତଃ** । ଯେପରି ବ୍ରହ୍ମଚାରୀ ଏକାନ୍ତରେ ରହନ୍ତି ସେହିପରି ନିଜେ ନିଜ ଭିତରେ ଏକାନ୍ତ ସେବନ କର । କାହାରି ଆଶା ରଖ ନାହିଁ । ଆଶା ରଖିବାକୁ ଚାହୁଁଛ ତ ରାମଙ୍କର ଆଶା ରଖ । ରାମଙ୍କ ଆଶା କଲେ ତୁମେ ଆଶାରାମ ହୋଇଯିବ । ଆଶାର ଦାସ ନୁହେଁ... ଆଶାର ରାମ ।

**ଆଶା ତୋ ଏକ ରାମ କୀ ଔର ଆଶ୍ ନିରାଶ ।**

## ଶୟନ

ଅନୁଷ୍ଠାନ କରିବା ଦିନମାନଙ୍କରେ ଭୂମି ଶୟନ କର ଅଥବା ପଲଙ୍କରୁ କୋମଳ ଗଦ୍ଦି ବାହାର କରି ସପ, କନ୍ଥା ବା କମ୍ବଳ ବିଛେଇ ଜପ-ଧ୍ୟାନ କରି କରି ଶୋଇଯାଅ । ସାଧକ ରୂପେ ଯଦି ନିଜ ଜୀବନକୁ ତେଜସ୍ୱୀ କରିବାକୁ ଇଚ୍ଛା କର, ପ୍ରଭାବଶାଳୀ ଏବଂ ଶରୀରକୁ ନୀରୋଗ ରଖିବାକୁ ଇଚ୍ଛା କର, ତେବେ କୋମଳ ଓ ମୋଟା ଗଦ୍ଦି ଉପରେ ଶୟନ କର ନାହିଁ ।

## ନିଦ୍ରା-ତନ୍ଦ୍ରା-ମନେରାଜରୁ ରକ୍ଷା ପାଅ

ଅନୁଷ୍ଠାନ ସମୟରେ ମନ୍ତ୍ରଜପ କରୁ କରୁ ଯଦି ନିଦ୍ରା, ତନ୍ଦ୍ରା ବା ଆଳସ୍ୟ ଆସେ ଅଥବା ମନର ଭାବନା ରାଜ୍ୟରେ ସାଧକ ନିଜକୁ ହଜାଇ ବସେ, ତେବେ ସେ ଅନୁଷ୍ଠାନରୁ ପୂରା ଲାଭ ପାଇ ପାରେ ନାହିଁ । ନିଦ୍ରା ଦୁଇ ପ୍ରକାର ହୋଇଥାଏ । ସ୍ଥୂଳ ଓ ସୂକ୍ଷ୍ମ । ଶରୀରର କ୍ଳାନ୍ତି ହେତୁ, ରାତ୍ରି ଜାଗରଣ ଯୋଗୁଁ, ଗରିଷ୍ଠ ଭୋଜନ ଅଥବା ମାତ୍ରାଧିକ ଭୋଜନ ହେତୁ ଯେଉଁ ନିଦ୍ରା ହୁଏ, ତାକୁ ସ୍ଥୂଳ ନିଦ୍ରା କୁହାଯାଏ ।

ଗଭୀର ନିଦ୍ରା ନୁହେଁ କି ପୂର୍ଣ୍ଣ ଜାଗ୍ରତ ନୁହେଁ । ସାମାନ୍ୟ ତନ୍ଦ୍ରା ବା ଅସାବଧାନତା ହେତୁ, ମାଳା ଯନ୍ତ୍ରବତ୍ ଚାଲିଥିଲେ ସୁଦ୍ଧା କେତେ ଥର ମାଳା ଘୂରାଗଲା ତାହା ଯଦି ଭୁଲି ହୋଇଗଲା, ତେବେ ତାକୁ ତନ୍ଦ୍ରା ବା ସୂକ୍ଷ୍ମ ନିଦ୍ରା କୁହାଯାଏ ।

ଅସମୟରେ ସୂକ୍ଷ୍ମନିଦ୍ରା ଯଦି ଆସିଯାଏ, ତା'ର କାରଣ ଜାଣି ନିବାରଣର ଉପାୟ କରିବାକୁ ହେବ । ସ୍ଥୂଳ ନିଦ୍ରାକୁ ଜୟ କରିବା ପାଇଁ ଯୋଗାସନ କରିବା ଉଚିତ । ପାଦପଶ୍ଚିମୋତ୍ତାନାସନ, ମୟୂରାସନ, ପଦ୍ମାସନ, ଚକ୍ରାସନ ଆଦି

ଶରୀରର ରୋଗ ଦୂର କରେ । ଆରୋଗ୍ୟ ପ୍ରଦାନ କରେ ଏବଂ ନିଦ୍ରାକୁ ନିୟନ୍ତ୍ରଣ କରେ । ଏହି ସବୁ ଆସନ ମଧ୍ୟରୁ ପାଦପଶ୍ଚିମୋତ୍ତାନାସନ ଅତ୍ୟନ୍ତ ଲାଭଦାୟକ ।

ସୂକ୍ଷ୍ମନିଦ୍ରା ଅର୍ଥାତ୍ ତନ୍ଦ୍ରାକୁ ଜିତିବା ପାଇଁ ପ୍ରାଣାୟାମ କରିବା ଉଚିତ । ପ୍ରାଣାୟାମ ଦ୍ୱାରା ନାଡ଼ି ଶୁଦ୍ଧ ହୁଏ ରକ୍ତର ମଳ ବାହାରିଯାଏ, ଫୁସ୍‌ଫୁସ୍ ସକ୍ରିୟ ହୁଏ, ଶରୀରରେ ପ୍ରାଣବାୟୁ ଅଧିକ ପରିମାଣରେ ଠିକ୍ ରୂପେ ପ୍ରବାହିତ ହୁଏ, ଜ୍ଞାନତନ୍ତୁ ପୁଷ୍ଟ ହୁଏ ଏବଂ ବୁଦ୍ଧି ବିବେକର ଜାଗରଣ ହୁଏ । ଶରୀରରେ ତେଜ ଓ ସ୍ଫୂର୍ତ୍ତି ସଞ୍ଚାର ହେବା ଦ୍ୱାରା ତନ୍ଦ୍ରା ଆକ୍ରମଣ କରେ ନାହିଁ ।

ମନୋରାଜର ଅର୍ଥ ଆପଣ ଗୋଟାଏ କାର୍ଯ୍ୟ କରୁଛନ୍ତି, କିନ୍ତୁ ମନ କିଛି ଅନ୍ୟ କଥା ଚିନ୍ତା କରୁଛି, ଭାବନାର ଜାଲ ବିଛାଉଛି, କେଉଁଆଡ଼େ ଘୂରିବୁଲୁଛି । ହାତ ମାଳା ଘୁରାଉଛି, ଜିଭ ମନ୍ତ୍ର ରଟୁଛି କିନ୍ତୁ ମନ କୌଣସି ଅନ୍ୟ କଥା ଚିନ୍ତା କରୁଛି, ଅନ୍ୟ ଯୋଜନା ଚଲାଉଛି, ଏହାର ନାମ ମନୋରାଜ ।

ଗୋଟିଏ ପୁରୁଣା କଥା । ଥରେ ଜଣେ ସେଠ୍‌ଙ୍କର ପୁଅ ବିବାହ ହେବାର ଥିଲା । ସେ ଗୋଟିଏ ମଜୁରିଆର ମୁଣ୍ଡରେ ଘିଅ ହାଣ୍ଡିଟିଏ ବୁହାଇ ଘରକୁ ଫେରୁଥିଲେ । ସେଠ୍‌ଙ୍କର ପୁଅବାହା କଥା । ମଜୁରିଆର ମନ ଭାରି ଖୁସି । ତା ମନରେ କିଛି ଅଧିକା ମୂଲ ପାଇବାର ଆଶା ଅଛି । ବାଟରେ ଯାଉଥିବା ବେଳେ ଭାବିଲା : "ମୁଁ ପଇସା ପାଇଲେ କିଛି କୁକୁଡ଼ା କିଣିବି... କୁକୁଡ଼ା ଅଣ୍ଡା ଦେବେ... ଅଣ୍ଡାରୁ ଚିଆଁ ବାହାରିବେ... ଚିଆଁ ସବୁ କୁକୁଡ଼ା ହେବେ... ସେମାନେ ପୁଣି ଅଣ୍ଡା ଦେବେ...ଅଣ୍ଡାରୁ ପୁଣି କୁକୁଡ଼ା ହେବେ...ଏପରି ଗୁଡ଼ାଏ କୁକୁଡ଼ା ପାଇଯିବି ।

ମୁଣ୍ଡ ଉପରେ ଘିଅ ହାଣ୍ଡି ଅଛି । ପାଦ ଆଗକୁ ଚାଲିଛି । ମନରେ କଳ୍ପନା ଚାଲିଛି : "ସେହି କୁକୁଡ଼ା ସବୁ ବିକିଦେଇ ଗାଈ କିଣିବି । କ୍ଷୀର ବିକିବି ଏବଂ ଖୁବ୍ ପଇସା ରୋଜଗାର କଲାପରେ ଏହି ସବୁ ଧନ୍ଦା ଛାଡ଼ି ଗୋଟିଏ ବଢ଼ିଆ ଦୋକାନ ଖୋଲିବି । ବହୁତ ବଢ଼ିଆ ବେପାର ଚାଲିବ । ବିବାହ କରିବି... ଛୁଆ ପିଲା ହେବେ... ଆଗରେ ଦୋକାନ ପଛରେ ମକାନ (ଘର), ଦୋକାନରେ ବହୁତ ଗ୍ରାହକ ଜମା ହୋଇଥିବେ... ମୁଁ ସଉଦା ଦେବାରେ ବ୍ୟସ୍ତ ଥିବି... ଘରୁ ପୁଅ ଆସି

କହିବ : ‘‘ବାପା, ବାପା ! ମା’ ଡାକୁଛି, ଚାଲ ଖାଇବ ।’’ ମୁଁ ବିରକ୍ତ ହୋଇ କହିବି : ‘‘ଚାଲ, ଏଠୁ ହଟିବୁକି ନାହିଁ... ।’’

‘ଚାଲ, ହଟିବୁ କି ନାହିଁ’ ବୋଲି କହି ମଜୁରିଆ ତା’ ହାତ ଏପରି ହଲାଇଲା ଯେ ମୁଣ୍ଡର ଘିଅ ହାଣ୍ଡି ଖସିପଡ଼ି ଚୁର୍‌ମାର୍ ହୋଇଗଲା । କରିବ କ’ଣ ? ତାର ସମସ୍ତ ସୁନେଲି ସ୍ୱପ୍ନ ମୁହୂର୍ତ୍ତକ ମଧ୍ୟରେ କୁଆଡ଼େ ଉଭେଇ ଗଲା ।

ସେଠ୍ କ୍ରୋଧ ଜର୍ଜରିତ ହୋଇ କହିଲେ : ‘‘ଦୁଷ୍ଟ ! ତୁ ଏ କ’ଣ କଲୁ ? ‘‘ଚାଲ, ହଟିଯାଅ’’ କହି ମୋର ସହସ୍ର ଟଙ୍କାର ଘିଅକୁ ମାଟିରେ ମିଶାଇ ଦେଲୁ ?

ମଜୁରିଆ କହିଲା : ‘‘ସେଠ୍‌ଜୀ ! ଆପଣଙ୍କର କେବଳ ଘିଅ ନଷ୍ଟ ହେଲା । କିନ୍ତୁ ମୋର ଘରଦ୍ୱାର, ପୁତ୍ର-ପରିବାର, ବେପାର-ଧନ୍ଦା ସବୁ କିଛି ଧୂଳିସାତ୍ ହୋଇଗଲା ।’’

ଏ ହେଲା ମନୋରାଜ ବା ମନଃ କଳ୍ପିତ ରାଜ୍ୟ । ମଣିଷ କାମ କରେ ଗୋଟାଏ ଏବଂ ତା’ର ମନରେ କଳ୍ପନା ଚାଲିଥାଏ ଆଉ ଗୋଟାଏ । କୌଣସି ସାଧାରଣ କାମରେ ବ୍ୟସ୍ତ ଥିବାବେଳେ ମନର କଳ୍ପନା କିଛି କମ୍ ହୁଏ । କିନ୍ତୁ ଜପ, ଧ୍ୟାନ କରିବା ପାଇଁ ବସିଲେ ମନୋରାଜ ଛାଏଁ ବଢ଼ିଯାଏ । ସେହି ସମୟରେ ବାହ୍ୟ କ୍ରିୟା ହେଉ ନ ଥିବା ହେତୁ ମନ ନିଜର ଜାଲ ବୁଣିବା ଆରମ୍ଭ କରିଦିଏ ।

ଏହି ମନୋରାଜକୁ ହଟାଇବା ପାଇଁ ଉଚ୍ଚ ସ୍ୱରରେ **‘ଓଁ’** ଉଚ୍ଚାରଣ କର । ଅତି ସାବଧାନ ପୂର୍ବକ ମନକୁ ଦେଖ ଏବଂ ତାକୁ ପଚାର : ‘‘ ରେ ମନୀରାମ ! ତୁ କ’ଣ କରୁଛୁ ? ଏହା ଦ୍ୱାରା ସେ କଳ୍ପନା କରିବ ବନ୍ଦ କରିବ । ପୁଣି ଜପରେ ତାକୁ ଲଗାଅ, ମନ୍ତ୍ରର ଅର୍ଥ ସହ ମନକୁ ଲଗାଅ । ସଂକ୍ଷେପରେ ସ୍ଥୂଳ ନିଦ୍ରାକୁ ଜିତିବା ପାଇଁ ଆସନ, ସୂକ୍ଷ୍ମ ନିଦ୍ରା ବା ତନ୍ଦ୍ରାକୁ ଜିତିବା ପାଇଁ ପ୍ରାଣାୟାମ ଏବଂ ମନୋରାଜକୁ ଜିତିବା ପାଇଁ ‘ଓଁ କାର’କୁ ଦୀର୍ଘ ସ୍ୱରରେ ଜପ କରିବା ଉଚିତ । ଯେଉଁ ବ୍ୟକ୍ତି ସୂର୍ଯ୍ୟାସ୍ତ ଏବଂ ସୂର୍ଯ୍ୟୋଦୟ ସମୟରେ ଶୋଇ ରହନ୍ତି ସେ ଆୟୁକୁ ହ୍ରାସ କରନ୍ତି । ବୁଦ୍ଧି ଉପରେ ଏହାର ଭଲ ପ୍ରଭାବ ପଡ଼େ ନାହିଁ । ବୁଦ୍ଧିର ସମ୍ବନ୍ଧ ସୂର୍ଯ୍ୟଙ୍କ ସହିତ ରହିଛି ଏବଂ ମନର ସମ୍ବନ୍ଧ ଚନ୍ଦ୍ରଙ୍କ ସହିତ ରହିଛି । ତେଣୁ ତାଙ୍କ ସହ ଅନୁକୂଳ

ଆଚରଣ କଲେ ଲାଭ ହେବ । ଯେଉଁ ବ୍ୟକ୍ତି ଅନୁଷ୍ଠାନ ସଫଳ କରିବାକୁ ଇଚ୍ଛା କରନ୍ତି, ଇଷ୍ଟ ମନ୍ତ୍ର ସିଦ୍ଧ କରିବାକୁ ଚାହାନ୍ତି, ଜୀବନର ମହକତା ଆଣିବାକୁ ଚାହାନ୍ତି, ସେ ମହତ୍ତ୍ୱପୂର୍ଣ୍ଣ ଦୃଷ୍ଟିରେ ଏହି ସତ୍ୟକୁ ବୁଝିବା ଉଚିତ । ସନ୍ଧିକାଳ ତାଙ୍କ ପାଇଁ ବଡ଼ ମହତ୍ତ୍ୱପୂର୍ଣ୍ଣ ଅଟେ । ସୂର୍ଯ୍ୟୋଦୟର ୧୦-୧୫ ମିନିଟ୍ ପୂର୍ବ ଏବଂ ପର, ସୂର୍ଯ୍ୟାସ୍ତର ଦଶ ପନ୍ଦର ମିନିଟ୍ ପୂର୍ବ ଏବଂ ପର ଏବଂ ରାତ୍ର ୧୨ଟା ବାଜିବାର ୧୫ ମିନିଟ୍ ପୂର୍ବରୁ ୧୫ ମିନିଟ୍ ପର ପର୍ଯ୍ୟନ୍ତ, ଏହି ସନ୍ଧିକାଳରେ ଜପ କରି କିଛି ସମୟ ପାଇଁ ଦେହ ଓ ମନର ପରିଶ୍ରମରୁ ନିଜକୁ ମୁକ୍ତ କରିଦେବା ଉଚିତ । ଜପ ବନ୍ଦ କରି ଶ୍ରମରହିତ ସ୍ଥିତିରେ ରହିଲେ ଅମାପ ଲାଭ ହୁଏ ।

## ସ୍ୱଚ୍ଛତା ଓ ପବିତ୍ରତା

ଶରୀର ଓ ମନ ପରସ୍ପର ଜୋଡ଼ି ହୋଇ ରହିଛନ୍ତି । ଶରୀରର ପ୍ରଭାବ ମନ ଉପରେ ଏବଂ ମନର ପ୍ରଭାବ ଶରୀର ଉପରେ ପଡ଼େ । ଶରୀର ଅଶୁଦ୍ଧ ହେଲେ ମନ ପ୍ରଫୁଲ୍ଲ ରହି ପାରିବ ନାହିଁ । ଶରୀର ତାମସୀ ବସ୍ତ୍ର ପରିଧାନ କଲେ ମନ ତମସାଚ୍ଛନ୍ନ ହେବ । ଏଣୁ ଯେଉଁ ବ୍ୟକ୍ତି ମଳିନ ବସ୍ତ୍ର ବ୍ୟବହାର କରନ୍ତି, ରାତ୍ରିରେ ପିନ୍ଧିଥିବା ବସ୍ତ୍ରକୁ ପରଦିନ ସ୍ନାନ ପରେ ପୁଣି ପିନ୍ଧନ୍ତି ସେହି ବ୍ୟକ୍ତି ସାବଧାନ ହେବା ଉଚିତ । ଧୁଆ ହୋଇଥିବା ବସ୍ତ୍ର ପିନ୍ଧିବା ଏକାନ୍ତ ଆବଶ୍ୟକ ।

ଏପରି ଏକ ବ୍ୟକ୍ତି ମୋ ଦୃଷ୍ଟିଗୋଚରକୁ ଆସିଛି ଯାହାକୁ ଦେଖି ମୋ ମନରେ ତା'ପ୍ରତି ଦୟା ଆସିଛି । ତାକୁ ରହିବା ପାଇଁ କେହି ସ୍ଥାନ ଦେଲେ ନାହିଁ । ଯେଉଁଠାକୁ ବିଚରା ଗଲା ସମସ୍ତେ ଛି, ଛାକର କଲେ । ତା'ର ଏହି ଦୟନୀୟ ସ୍ଥିତି କେଉଁ କାରଣରୁ ଜାଣିବା ପାଇଁ ଅନୁସନ୍ଧାନ କଲି । ଦେଖିଲି, ତା'ର ପରିଧାନ ଅତି ଅପରିଷ୍କାର ଓ ଅପରିଚ୍ଛନ୍ନ ହେତୁ ତା'ର ଏହି ଦୟନୀୟ ଅବସ୍ଥା ।

ଅଇଁଠା ମୁହଁ, ଅଘଷା ମଇଳା ଦାନ୍ତ ଏବଂ ମଇଳା ଦୁର୍ଗନ୍ଧ ଯୁକ୍ତ ବସ୍ତ୍ର ଏ ସବୁ ତୁମର ଓଜକୁ ହ୍ରାସ କରିଦେବ ।

ଶୌଚ କରିବା ସମୟରେ ଯେଉଁ ବସ୍ତ୍ର ପରିଧାନ କରିଛ ପୁଣି ସେହି ବସ୍ତ୍ରକୁ ସ୍ନାନ ପରେ କଦାପି ପରିଧାନ କରିବା ଅନୁଚିତ । ସ୍ନାନ ସମୟରେ ସେହି ବସ୍ତ୍ରକୁ

ବିନା ସାବୁନ୍‌ରେ ହେଉ ନା କାହିଁକି, କେବଳ ଶୁଦ୍ଧ ଜଳରେ ଧୋଇଦେବା ଉଚିତ ।

ପରିସ୍ରା କରିବା ସମୟରେ ଜଳର ଉପଯୋଗ ନିତାନ୍ତ ଜରୁରୀ ଅଟେ । ପରିସ୍ରା ପରେ ଇନ୍ଦ୍ରିୟକୁ ଥଣ୍ଡା ପାଣିରେ ଧୋଇବା ଉଚିତ । ଏହା ସହ ହାତ ଗୋଡ଼ ଧୋଇବା ଏବଂ ପାଟି କୁଳି କରି ପରିଷ୍କାର କରି ନେବା ଉଚିତ । କିଛି ଖାଇବା-ପିଇବା ପରେ ମଧ୍ୟ ମୁଖ ଶୁଦ୍ଧି ନିମନ୍ତେ କୁଳି କରିବା ଉଚିତ ।

ଦାନ୍ତକୁ ସ୍ୱଚ୍ଛ ଏବଂ ଧଳା ରଖିବା ଉଚିତ । ଦୁର୍ଗନ୍ଧ ହଳଦିଆ ହୋଇଥିବା ଦାନ୍ତ ଆମର ବ୍ୟକ୍ତିତ୍ୱ ଏବଂ ତେଜକୁ ହ୍ରାସ କରିଦିଏ । ସକାଳ ଏବଂ ଆହାର ପରେ ଦାନ୍ତକୁ ଭଲ ରୂପେ ସଫା କରିନେବା ଠିକ୍ ହେବ । ମାସରେ କେତେ ଥର ରାତ୍ରିରେ ଶୋଇବା ପୂର୍ବରୁ ସୋରିଷ ତେଲ ଏବଂ ଲୁଣ (ପୂରା ଗୁଣ୍ଡ ହୋଇଥିବା) ସାହାଯ୍ୟରେ ଦାନ୍ତକୁ ଘଷିବା ଉଚିତ । ଏହା ଦ୍ୱାରା ଦାନ୍ତ ବୃଦ୍ଧାବସ୍ଥାରେ ମଧ୍ୟ ନଷ୍ଟ ହେବ ନାହିଁ ।

ଜପ କରିବା ପାଇଁ ଆସନରେ ବସି ସର୍ବ ପ୍ରଥମେ ଶୁଦ୍ଧ ଭାବନା ସହ ହାତ ଧୋଇ ପାଣିରେ ତିନି ଥର ଆଚ଼ମନ କରିବ । ଜପ ଶେଷରେ ମଧ୍ୟ ତିନି ଥର ଆଚ଼ମନ କରିବ । ଜପ କରିବା ସମୟରେ ଛିଙ୍କ, କାଶ, ହାଇ ଆସିବା ବା ଅପାନବାୟୁ ଯିବା ଆଦି ଅଶୁଦ୍ଧି ଅଟେ । **ଏହି ସମୟରେ ଜପ ବନ୍ଦ କରି ଆଚମନ ଦ୍ୱାରା ଶୁଦ୍ଧ ହେଲା ପରେ ପୁନର୍ବାର ମାଳାରେ ଜପ ଆରମ୍ଭ କରିବ ।** ଏହା ପୂର୍ବରୁ କରାଯାଇଥିବା ଜପ (ଅସମ୍ପୂର୍ଣ୍ଣ ମାଳା) ହିସାବକୁ ଆସିବ ନାହିଁ । ଆଚମନ ବଦଳରେ ଓଁ ଉଚ୍ଚାରଣ ସହ ଗୁରୁମନ୍ତ୍ର ସାତ ଥର ଦୋହରାଇଲେ ଶୁଦ୍ଧି ହୋଇଯିବ । ଯେପରି ମନ୍ତ୍ର, ଯଦି **'ନମଃ ଶିବାୟ'** ତେବେ **'ଓଁ ନମଃ ଶିବାୟ ଓଁ'** ସାତ ଥର ଦୋହରାଇଲେ ଘଟିଥିବା ବିଘ୍ନ ନିବୃତ୍ତ ହୋଇଯାଏ ।

ଜପ ଚାଲିଥିବା ସମୟରେ ମଳମୂତ୍ରର ବେଗ ଯଦି ଆସେ ତେବେ ତାକୁ ରୋକିବା ଉଚିତ ନୁହେଁ । ଜପ ପୂରା କରି ସାରିଲେ ଉଠିବି– ଏପରି ଭାବନା କରି ଜପ କରିବା ଠିକ୍ ନୁହେଁ । ମଳମୂତ୍ର ରୋଧ କଲେ ନାନା ପୀଡ଼ା ଭୋଗିବାକୁ ହୁଏ ଏବଂ ମନ ଈଶ୍ୱର ଚିନ୍ତା ନ କରି ମଳମୂତ୍ର ବିଷୟରେ ଚିନ୍ତନ କରେ । ମାଳା

ଯନ୍ତ୍ରବତ୍ ଚାଲେ । ସମୟ ବିତିଯାଏ ଏବଂ ସେ ସମୟରେ ଜପ ଫଳଦାୟୀ ହୁଏ ନାହିଁ । ତେଣୁ ମଳମୂତ୍ର ତ୍ୟାଗ କରି ସ୍ନାନାଦି ଦ୍ୱାରା ଶୁଦ୍ଧ ହୋଇ ସ୍ୱଚ୍ଛ ବସ୍ତ୍ର ପରିଧାନ ପୂର୍ବକ ଜପାନୁଷ୍ଠାନ ଆରମ୍ଭ କରାଯାଏ । ଯଦି କେବଳ ପରିସ୍ରା କରିବାକୁ ହୁଏ ତେବେ ହାତପାଦ ଧୋଇ, ପାଟି କୁଳି କରି ଶୁଦ୍ଧ ପବିତ୍ର ହେବ । ପୁଣିମାଳା ଆରମ୍ଭ କରି ବାକି ଥିବା ଜପସଂଖ୍ୟା ପୂରା କରିବ ।

**ପରିସ୍ରା କରି ସାରି ସଙ୍ଗେ ସଙ୍ଗେ ପାଣି ପିଇବ ନାହିଁ କି ପାଣି ପିଇ ସାରି ସଙ୍ଗେ ସଙ୍ଗେ ପରିସ୍ରା କରିବ ନାହିଁ ।**

## ଚିତ୍ତର ବିକ୍ଷେପକୁ ନିବାରଣ କର

ଅନୁଷ୍ଠାନ ଚାଲିଥିବା ଦିନମାନଙ୍କରେ ଶରୀର-ବସ୍ତ୍ରାଦି ଶୁଦ୍ଧ ରଖିବା ସଙ୍ଗେ ସଙ୍ଗେ ଚିତ୍ତକୁ ପ୍ରସନ୍ନ, ଶାନ୍ତ ଓ ନିର୍ମଳ ରଖିବା ଆବଶ୍ୟକ । ଯେଉଁ ସବୁ କାରଣରୁ ଚିତ୍ତରେ କ୍ଷୋଭ ଜାତ ହୁଏ ସେହି କାରଣସମୂହକୁ ଦୂର କରିବା ଉଚିତ । ରାସ୍ତାରେ କେଉଁ ସ୍ଥାନରେ ମଳ ପଡ଼ିଛି, ଛେପ ଖଙ୍କାର ପଡ଼ିଛି, କୌଣସି ଦୁର୍ଗନ୍ଧ ବସ୍ତୁ ପଡ଼ିଛି, ସେହି ବସ୍ତୁ ଦେଖିବା ଯୋଗୁଁ ଯଦି ଆମ ଚିତ୍ତରେ କ୍ଷୋଭ ଆସେ, ତେବେ ସେହି କ୍ଷୋଭ ସଂସ୍କାର ସୃଷ୍ଟି କରି ସ୍ୱଭାବକୁ ଖିନ୍ନ କରିଦିଏ । ସ୍ୱଭାବ ବିକୃତ ହେଲେ ପ୍ରସନ୍ନତା ବଦଳରେ ବ୍ୟବହାର ଚିଡ଼ି ଚିଡ଼ିଆ ପ୍ରକୃତିର ହୁଏ ।

ମଦାଳସା ନିଜ ପୁତ୍ର ଅଲରକ ଆଦିଙ୍କୁ ଉପଦେଶ ଦେବାକୁ ଯାଇ କହିଛନ୍ତି ମନୁଷ୍ୟ ନିଜ ମଳକୁ ମଧ୍ୟ ଦେଖିବା ଅନୁଚିତ । ମଳ ଦୃଷ୍ଟିଗୋଚର ହେଲେ ମନରେ କ୍ଷୋଭ ହୋଇପାରେ । କେତେକ ଛୁଆ ଅଜାଣତରେ ନିଜ ମଳକୁ ନେଇ ଖେଳନ୍ତି । ମା' ବାପା ଭାବନ୍ତି : "ଛୁଆମାନେ ତ... ଖେଳୁଛନ୍ତି । କିଛି ଯାଏ ଆସେ ନାହିଁ । କିନ୍ତୁ ବିଚରା ଜାଣନ୍ତି ନାହିଁ, ଘଟଣା ଅତି ସାମାନ୍ୟ ପରି ବୋଧ ହେଲେ ସୁଦ୍ଧା ଭବିଷ୍ୟତ ଜୀବନରେ ଏହା ଏପରି ସଂସ୍କାର ପକାଇବ ଯାହା ଚିତ୍ତକୁ ଖିନ୍ନ କରାଇ ଜୀବନକୁ ଅଶାନ୍ତ କରିବ ।

କୌଣସି ଅଶାନ୍ତ ବ୍ୟକ୍ତି, ଶୁଦ୍ର, ମହାଚଣ୍ଡାଳ, ଅତ୍ୟନ୍ତ ଦୁଷ୍ଟ ଓ ଦୁରାଚାରୀକୁ ଦେଖିବା ହେତୁ ଆମ ମନ ଉପରେ ତାର କୁପ୍ରଭାବ ଯେପରି ପଡ଼େ, ଅତି ଦୁର୍ଗନ୍ଧ

ଓ ଅପବିତ୍ର ବସ୍ତୁ ଦୃଷ୍ଟିଗୋଚର ହେଲେ ଆମ ଚିତ୍ତ ଯେପରି କ୍ଷୁଭିତ ହୁଏ । କୁଆ, ଚିଲ, ଶାଗୁଣାଦି ଅପବିତ୍ର ଭକ୍ଷଣକାରୀ ଜୀବଙ୍କୁ ଦେଖିଲେ ଚିତ୍ତ ଉପରେ ଏପରି କୁପ୍ରଭାବ ପଡ଼େ । ଏପରି ସ୍ଥିତିରେ ମନର କ୍ଷୋଭକୁ ଦୂର କରିବା ପାଇଁ ସୂର୍ଯ୍ୟ, ଚନ୍ଦ୍ର ବା ଅଗ୍ନିକୁ ଦର୍ଶନ କର, ସନ୍ଥ-ମହାତ୍ମା, ସଦ୍‌ଗୁରୁଙ୍କ ଦର୍ଶନ-ସ୍ମରଣ କର, ଭଗବନ୍ନାମ ଉଚ୍ଚାରଣ କର ଏବଂ ବ୍ରହ୍ମ-ପରମାତ୍ମାଙ୍କ ଚିନ୍ତନ କର । ଏହା ଦ୍ୱାରା ଚିତ୍ତର ଖିନ୍ନ ଦଶା ଚାଲିଯିବ ଏବଂ ମନ ପ୍ରଶାନ୍ତି ଲାଭ କରିବ ।

ଜ୍ଞାନୀଙ୍କ ପାଇଁ ତ କୁଆ-କୁକୁର, ଶୁଦ୍ର-ଚଣ୍ଡାଳ, ହେୟ, ତ୍ୟାଜ୍ୟ ବସ୍ତୁ, ସବୁ ବ୍ରହ୍ମସ୍ୱରୂପ । ଯାହାଙ୍କର ସ୍ୱରୂପ ସ୍ଥିତି ଆସି ଯାଇଛି, ସେହି ବୋଧବାନ୍ ମହାପୁରୁଷଙ୍କ ଦୃଷ୍ଟିରେ ସବୁ କିଛି ଖେଳମାତ୍ର । କିନ୍ତୁ ସେହି ମହାପୁରୁଷଙ୍କ ପଦାଙ୍କ ଅନୁକରଣ ଏବଂ ଅନୁସରଣ କିପରି ହେବ, ତାଙ୍କ ଅନୁଭୂତି ନିଜ ଅନୁଭୂତି ରୂପେ କିପରି ପ୍ରକଟିତ ହେବ, ତାଙ୍କ ଜୀବନର ଗଭୀରତାକୁ ଏବଂ ଜ୍ଞାନର ଶିଖରକୁ କିପରି ସ୍ପର୍ଶ କରାଯିବ, ସେହି ଅନୁଯାୟୀ ନିଜ ଅନ୍ତଃକରଣ କିପରି ନିର୍ମାଣ କରାଯିବ, ସାଧକ ପାଇଁ ଏସବୁ ବିଚାରଣୀୟ ଏବଂ ଆଚରଣୀୟ ଅଟେ ।

## ଶକ୍ତିର ସଂରକ୍ଷଣ କର

ନୌକା ନଦୀ ପାର ହେବା ପାଇଁ ଉଦ୍ଦିଷ୍ଟ, ଶିର ଉପରେ ବୋଝ କରିବା ପାଇଁ ନୁହେଁ । ନୌକାରେ ବସି ନଦୀ ପାର କରିବାକୁ ହୁଏ, ନୌକାକୁ ଶିର ଉପରେ ରଖି ନଦୀ ଭିତରକୁ ପ୍ରବେଶ କରାଯାଏ ନାହିଁ ।

ମନ୍ତ୍ର ଏକ ନାବ ସଦୃଶ । ମନ୍ତ୍ରର ଉପଯୋଗ କରାଯାଏ । ମନ୍ତ୍ର ଏପରି ଜପ କରା ନ ଯାଉ ଯାହାକି ରାତ୍ରିରେ ଅନିଦ୍ରାର କାରଣ ହେବ । ଯେଉଁ ବ୍ୟକ୍ତି ଖାଦ୍ୟପେୟରେ ଶୃଙ୍ଖଳିତ ନୁହଁ, ଫଳ-ଦୁଗ୍ଧ ଆଦିର ଉପଯୋଗ କରନ୍ତି ନାହିଁ, ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି ନାହିଁ ଏବଂ ଉଚ୍ଚ ରଡ଼ି କରି ମନ୍ତ୍ର ରଟନ୍ତି, ତାଙ୍କର ଜ୍ଞାନତନ୍ତୁ କ୍ଷୁଭିତ ହୁଏ ଏବଂ ଚକ୍ଷୁ ଅଧିକ ବିସ୍ଫାରିତ ହୁଏ । ଯଦି ଏପରି ହୁଏ ଜାଣିବାକୁ ହେବ ମନ୍ତ୍ରର କିଛି କୁପ୍ରଭାବ ପଡ଼ିଛି । ମଦ ସେବନ ଦ୍ୱାରା ଆଖି ଅତି ଚଉଡ଼ା ହୋଇଯାଏ । ଚକ୍ଷୁ ଗୋଲକର ଶକ୍ତି କ୍ଷୀଣ ହୋଇଯାଏ । ଯେଉଁ ଲୋକ ଚକ୍ଷୁକୁ ପ୍ରସାରିତ କରି

ଦେଖେ ତା'ର ଚକ୍ଷୁର ଶକ୍ତି କ୍ଷୀଣ ହୋଇଯାଏ । ଚକ୍ଷୁ ବନ୍ଦକରି ଜପ କଲେ ମନୋରାଜ୍ୟରେ ଭ୍ରମିତ ହେବାର ଆଶଙ୍କା ରହିଛି ।

ମନ୍ତ୍ରଜପ ଏବଂ ଧ୍ୟାନ ସମୟରେ ଅର୍ଦ୍ଧନିମିଳିତ ନେତ୍ର ରହିବା ଉଚିତ । ଅର୍ଦ୍ଧମୁଦ୍ରିତ ନେତ୍ର ହେଲେ ଉପରର ଶକ୍ତି ନିମ୍ନ ଦିଗର ଶକ୍ତି ସହ ଏବଂ ନିମ୍ନ ଦିଗର ଶକ୍ତି ଉପରେ ଦିଗର ଶକ୍ତି ସହ ମିଶିଯାଏ । ବିଦ୍ୟୁତର ବର୍ତ୍ତୁଳ ପୂର୍ଣ୍ଣ ହୁଏ । ଶକ୍ତି ବହିର୍ଗତ ହୋଇ କ୍ଷୀଣ ହୁଏ ନାହିଁ ।

ଆମେ ବସ୍ ବା ଟ୍ରେନରେ ବସି ଯାତ୍ରା କରିବା ସମୟରେ ଝରକା ପାଖରେ ବସି ଯେତେବେଳେ ବାହାରକୁ ଦେଖୁ, ଆମ ଆଖି ଶୀଘ୍ର ଥକିଯାଏ । ଚଳନ୍ତା ଗାଡ଼ିରେ ବସି ଝରକା ବାଟେ ଆଖି ମେଲେଇ ବାହାର ଦୃଶ୍ୟ ଦେଖିବା ଦ୍ୱାରା ଦୃଷ୍ଟି ଶକ୍ତିର ତରଙ୍ଗ ବାହାରକୁ ଚାଲିଯାଏ, ଫଳରେ ମଣିଷ ଅତି ଶୀଘ୍ର ଥକିଯାଏ ।

ତେଣୁ ବାଣୀର ବ୍ୟବହାର ଏପରି କର ଯେପରି ଶକ୍ତିର ଅପଚୟ ହେବ ନାହିଁ । ମନୋରାଜ୍ୟରେ ଭସାଇ ଦେଇ ନିଜକୁ ଶକ୍ତିହୀନ କର ନାହିଁ । ଅନୁଷ୍ଠାନ ଦିନମାନଙ୍କରେ ଜୀବନକୁ ବହୁତ ମୂଲ୍ୟବାନ ବୁଝି ଜୀବନ ଯାପନ କର । କିନ୍ତୁ ଏହା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ଜୀବନ ପ୍ରତି ତୁଚ୍ଛବୋଧ ରଖ ନାହିଁ । ନିଜ ଜୀବନକୁ ଏବଂ ଜୀବନର ଶକ୍ତି ସମୂହକୁ ମୂଲ୍ୟବାନ ଜାଣି ସେ ସବୁକୁ ପରମ ମୂଲ୍ୟବାନ ପରମାତ୍ମାଙ୍କ ଶ୍ରୀଚରଣରେ ନିବେଦନ କର ।

## ମନ୍ତ୍ରରେ ଦୃଢ଼ ବିଶ୍ୱାସ

ମନ୍ତ୍ରଜପରେ ଦୃଢ଼ ବିଶ୍ୱାସ ରଖିବା ଉଚିତ । 'ବିଶ୍ୱାସୋ ଫଳଦାୟକଃ' ଏହି ମନ୍ତ୍ର ବଢ଼ିଆ କି ସେହି ମନ୍ତ୍ର ବଢ଼ିଆ ? ଏହି ମନ୍ତ୍ର ଦ୍ୱାରା ଲାଭ ହେବ କି ଲାଭ ହେବ ନାହିଁ ? ଏପରି ସନ୍ଦେହ କରି ଯଦି ମନ୍ତ୍ରଜପ କରାଯାଏ ତେବେ ଏହାର ପରିଣାମ ଶତକଡ଼ା ଶହେ ହେବ ନାହିଁ ।

**ସଂଶୟ ସବ୍ କୋ ଖାତ୍ ହୈ ସଂଶୟ ସବ୍‌କା ପୀର ।**
**ସଂଶୟ କା ଜୋ ଫାକୀ କରେ ଉସକା ନାମ ଫକୀର ।।**

## ଅପ୍ରତିହତ ପ୍ରଜ୍ଞାକୁ ଜଗାଅ

ଛୋଟ ଛୋଟ କଥାରେ ଚିତ୍ତକୁ ବିବ୍ରତ କଲେ ବୁଦ୍ଧିର ଶକ୍ତି ନଷ୍ଟ ହୋଇଯାଏ । ସାମାନ୍ୟ ଘଟଣାରେ ଆମେ ଯଦି ଚିନ୍ତିତ ହୋଇ ପଡୁ ତେବେ ବୁଦ୍ଧିର ଶକ୍ତି ହ୍ରାସ ହୋଇଯିବ । ଜଗତର ଛୋଟ ଛୋଟ ଘଟଣା ଆମକୁ ପ୍ରଭାବିତ କରାଏ । ଇଂଲଣ୍ଡ ଆମେରିକା ଦ୍ୱାରା, ଜର୍ମାନୀ ଜାପାନ ଦ୍ୱାରା ଆକର୍ଷିତ ହୋଇଯାଏ କାରଣ ଏହି ଦେଶ ଏହା ଆବିଷ୍କାର କଲା, ସେହି ଦେଶ ସେୟା ଆବିଷ୍କାର କଲା, ଏଇୟା ତିଆରି କଲା, ସେଇୟା ତିଆରି କଲା ଇତ୍ୟାଦି ।

ପ୍ରକୃତିର ଦ୍ୱନ୍ଦ୍ୱରେ ଆମେ କ୍ଷୁବ୍ଧ ହୋଇଯାଉ । ଥଣ୍ଡା-ଗରମ, ଭୋକ ଶୋଷ ଆମକୁ ଅସହ୍ୟ ହୁଏ । ଆମକୁ ନିଜର ସହନ ଶକ୍ତିକୁ ବଢ଼ାଇବାକୁ ହେବ । ଶ୍ରୀ କୃଷ୍ଣ କହିଛନ୍ତ :

**ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣ ସୁଖଦୁଃଖଦାଃ ।**
**ଆଗମାପାୟିନୋଽନିତ୍ୟାସ୍ତାଂସ୍ତିତିକ୍ଷସ୍ୱ ଭାରତ ॥**

'ହେ କୁନ୍ତୀପୁତ୍ର ! ଶବ୍ଦସ୍ପର୍ଶାଦି ବିଷୟ ସହିତ ଇନ୍ଦ୍ରିୟ ବୃତ୍ତିମାନଙ୍କର ଯେ ସଂଯୋଗ ସେ ଶୀତ ଉଷ୍ଣ ଓ ସୁଖ ଦୁଃଖାଦିର କାରଣ ଅଟେ । ସେହି ସଂଯୋଗର ଉତ୍ପତ୍ତି ଓ ବିନାଶ ହୁଏ, ତେଣୁ ସେମାନେ ଅନିତ୍ୟ ଅଟନ୍ତି । ସେମାନଙ୍କୁ ତୁମେ ସହ୍ୟ କର ।' (ଭଗବଦ୍‌ଗୀତା : ୨.୧୪)

ପୁନର୍ବାର ସେ କହିଛନ୍ତି :

**ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ ।**
**ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ ॥**

'କାରଣ ଏହି କି– ହେ ପୁରୁଷଶ୍ରେଷ୍ଠ ! ସୁଖ-ଦୁଃଖକୁ ସମାନ ରୂପରେ ଦେଖିବା ଧୀର ପୁରୁଷଙ୍କୁ ଇନ୍ଦ୍ରିୟ ଓ ବିଷୟ ସଂଯୋଗ ବ୍ୟାକୁଳ କରାଏ ନାହିଁ । ତେଣୁ ସେ ମୋକ୍ଷ ପ୍ରାପ୍ତିର ଯୋଗ୍ୟ ଅଟନ୍ତି ।' (ଭଗବଦ୍‌ଗୀତା : ୨.୧୫)

ସୁଖ-ଦୁଃଖାଦିରେ ଯେ ପ୍ରଭାବିତ ହୁଏ ନାହିଁ ତାଙ୍କ ବୁଦ୍ଧି ଅତି ଶୀଘ୍ର

ରତମ୍ଭରା ପ୍ରଜ୍ଞା ଧାରଣ କରେ । ପ୍ରଶାନ୍ତାତ୍ମା ହେଲେ ବୁଦ୍ଧି ଋତମ୍ଭରା ପ୍ରଜ୍ଞା ହୋଇଯାଏ : ତେଣୁ ଆପଣ ଚିତ୍ତକୁ ସ୍ୱଚ୍ଛ ରଖନ୍ତୁ । ପରିସ୍ଥିତିର ସ୍ରୋତରେ ନିଜକୁ ଭସାଇ ଦିଅନ୍ତୁ ନାହିଁ । ଏହିପରି ସାବଧାନ ରହିଲେ ଜପାନୁଷ୍ଠାନର ଫଳ ହସ୍ତାମଳକବତ୍ ଉପଲବ୍ଧ ହେବ ।

## ଇଷ୍ଟ ଶରଣ ଦ୍ୱାରା ଅନିଷ୍ଟ ଦୁର୍ବଳ ହୋଇଯାଏ

ଆଶ୍ରମକୁ ଆସୁଥିବା ଜଣେ ପ୍ରଫେସର କହିଲେ :" ଆମର ଜଣେ ଦୁଷ୍ଟ ପ୍ରକୃତିର ପଡ଼ୋଶୀ ଥିଲେ । ସେ ଥିଲେ ବଡ଼ ଅନିଷ୍ଟକାରୀ । ଦିନେ ମୋ ପତ୍ନୀ ସହ ତାଙ୍କର ଝଗଡ଼ା ହେଲା । ସେ ସମୟରେ ମୁଁ ପୂଜା କରୁଥିଲି । ପ୍ରତିଦିନ ଏଗାର ମାଳା ଜପିବା ମୋର ନିୟମ ଥିଲା । ଝଗଡ଼ା ବଢ଼ିବାରେ ଲାଗିଲା । ଶହେ ଦୁଇଶହ ଲୋକ ଜମା ହୋଇ ପାଟି ତୁଣ୍ଡ କରୁଥିବା ଶୁଭିଲା । ମୋ ପତ୍ନୀ ବିଚାରୀ ସେହି ଦୁଷ୍ଟ ସହିତ ପାରନ୍ତେ କିପରି ? ମୋର ମନ କହିଲା : "ଉଠିବି, ତାକୁ ଯାଇ ଠିକ୍ ପାନେ ଦେବି ।" ଆଉ ଗୋଟିଏ ମନ (ବିବେକ) କହିଲା : "ନା... ଇଷ୍ଟମନ୍ତ୍ର ଜପ ପ୍ରଥମେ ପୂରା କରିଦିଏ, ତା'ପରେ ଯାଇ କଥା ।" ମନ୍ତ୍ରଜପ ପୂରଣ କରି ଉଠିଲା ବେଳକୁ ଦେଖିଲି ଏପରି କ'ଣ ଆଶ୍ଚର୍ଯ୍ୟଜନକ କଥା ହେଲା, ସମସ୍ତ ଲୋକ ଏକଜୁଟ୍ ହୋଇ କ'ଣ ଏପରି ତା' ମନକୁ ଧକ୍କା ଦେଲେ ଯେ ସବୁଦିନ ପାଇଁ ତା'ର ଝଗଡ଼ା ବନ୍ଦ ହୋଇଗଲା ।

ଯଦି ମନ୍ତ୍ରଜପ ଛାଡ଼ି ମୁଁ ସେହି ଗଣ୍ଡଗୋଳରେ ଭାଗ ନେଇ ଥାଆନ୍ତି, ବହୁତ କିଛି ଅଡୁଆ ହୋଇଥାଆନ୍ତା । ଝଗଡ଼ା ବଢ଼ି ଯାଆନ୍ତା ଏବଂ ତାର କୌଣସି ଦୁଷ୍ପରିଣାମ ଭୋଗିବାକୁ ପଡ଼ନ୍ତା ।

ଯଦି ଆମେ ଇଷ୍ଟମନ୍ତ୍ର ଜପ କରୁ ତେବେ ଅଳ୍ପ ଶ୍ରମରେ ବା ବିନା ଶ୍ରମରେ ଆମର ଅନିଷ୍ଟ ଦୂର ହୋଇପାରିବ । ଇଷ୍ଟ ସୁଦୃଢ଼ ହେଲେ ଅନିଷ୍ଟ ହେବ ନାହିଁ । ପରମାତ୍ମା ହେଉଛନ୍ତି ସମସ୍ତ ଇଷ୍ଟର ଇଷ୍ଟ ସ୍ୱରୂପ । ଯଦି ପରମାତ୍ମାଙ୍କ ସହିତ ଆମର ସମ୍ପର୍କ ସୁଦୃଢ଼ ଅଛି ତେବେ ଆମେ ସେତିକି ଶକ୍ତିଶାଳୀ ହୋଇପାରିବା ।

ବିଧି ସହିତ, ଭାବ ଏବଂ ବିଚାର ସହିତ, ସ୍ୱଚ୍ଛତା ଏବଂ ପବିତ୍ରତା ସହିତ, ସାଧନାର ସଂରକ୍ଷଣ କରି ଅନୁଷ୍ଠାନ ଯଦି କରାଯାଏ ତେବେ ଇଷ୍ଟମନ୍ତ୍ର ସିଦ୍ଧ ହୁଏ । ଜୀବନରେ ଦୁଇଟି ମାତ୍ର ଘଟଣା ହୁଏ : ଆମର ଇଷ୍ଟ ହୁଏ ବା ଅନିଷ୍ଟ ହୁଏ ଅର୍ଥାତ୍ ଭଲ ହୁଏ ବା ମନ୍ଦ ହୁଏ ।

ଯାହାର ଇଷ୍ଟ ମଜବୁତ୍, ତାର ଅନିଷ୍ଟ ହୋଇ ପାରେ ନାହିଁ । ଅନିଷ୍ଟ ସେହି ଲୋକର ହୁଏ, ଯାହାର ଇଷ୍ଟ ଦୁର୍ବଳ । ଯଦି ଆମର ଇଷ୍ଟ ଶକ୍ତିଶାଳୀ ହୁଏ ଶତ୍ରୁ ମଧ୍ୟ କିଛି ବିଗାଡ଼ି ପାରିବ ନାହିଁ । ତା ପରିବର୍ତ୍ତେ ଅନିଷ୍ଟ ଯଦି ବଳବତ୍ତର ହୁଏ, ମିତ୍ର ମଧ୍ୟ ଆମର ଶତ୍ରୁତା କରି ବସେ ।

## ଛତ୍ରପତି ଶିବାଜୀଙ୍କ ରକ୍ଷା

ସମର୍ଥ ରାମଦାସଙ୍କ ଶିଷ୍ୟ ଛତ୍ରପତି ଶିବାଜୀଙ୍କର ମୋଗଲମାନଙ୍କ ସହିତ ସଂଘର୍ଷ ଚାଲିଥାଏ । ଖୋଲାଖୋଲି ଭାବେ ଶୂରବୀର ଶିବାଜୀଙ୍କୁ ଯୁଦ୍ଧରେ ମୁହାଁମୁହିଁ ହେବା ମୋଗଲମାନଙ୍କ ପାଇଁ ଅସମ୍ଭବ ହେବା ଯୋଗୁଁ ଏକାନ୍ତରେ ଶିବାଜୀଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ମୋଗଲମାନେ କୌଣସି ଅସତ୍ ବିଦ୍ୟାର ଉପଯୋଗ କରି ଏକ ଷଡ଼ଯନ୍ତ୍ର ରଚନା କଲେ । ଜଣେ ମୋଗଲ ମନ୍ତ୍ରତନ୍ତ୍ର ବଳରେ ସିପାହୀମାନଙ୍କ ନଜରକୁ ପ୍ରତିହତ କରି, ସମସ୍ତ ବାଧାବିଘ୍ନକୁ ହଟାଇ ଶିବାଜୀ ଯେଉଁ କୋଠରୀରେ ବିଶ୍ରାମ କରୁଥିଲେ ସେଠାରେ ପହଞ୍ଚିଗଲା । ହଠାତ୍ ଖୋଳରୁ ଖଡ୍‌ଗ ବାହାର କରି ଶିବାଜୀଙ୍କୁ ଘାତ କରିବାକୁ ଉଦ୍ୟତ ହେବାମାତ୍ରେ କୌଣସି ଅଦୃଶ୍ୟ ଶକ୍ତି ତା'ର ହାତ ମୁଠାକୁ ଧରି ପକାଇଲା । ମୋଗଲ ମନରେ ଆସଲା : ''ମୁଁ ସମସ୍ତଙ୍କ ନଜରକୁ ମନ୍ତ୍ରତନ୍ତ୍ର ବଳରେ ପ୍ରତିହତ କରି ଏପର୍ଯ୍ୟନ୍ତ ପହଞ୍ଚିବାରେ ସମର୍ଥ ହେଲି ଅଥଚ ଠିକ୍ ଶେଷ ମୁହୂର୍ତ୍ତରେ ମୋତେ କିଏ ଅଟକାଇବାକୁ ଯାଉଛି ! ତାକୁ ତୁରନ୍ତ ଜବାବ ମିଳିଲା :''ରକ୍ଷକମାନଙ୍କ ଦୃଷ୍ଟିରୁ ଖସିଆସି ଏଠାରେ ପହଞ୍ଚାଇବା ପାଇଁ ତୋର ଇଷ୍ଟ ତୋତେ ଯେପରି ସାହାଯ୍ୟ କଲା, ସେହିପରି ଶିବାଜୀଙ୍କୁ ବଞ୍ଚାଇବା ପାଇଁ ତାଙ୍କ ଇଷ୍ଟ ମଧ୍ୟ ଏଠାରେ ସଜାଗ ହୋଇ ରହିଛନ୍ତି ।''

ଶିବାଜୀଙ୍କ ଇଷ୍ଟ ସେହି ମୋଗଲର ଇଷ୍ଟ ତୁଳନାରେ ସାତ୍ତ୍ୱିକ ଥିଲା । ତେଣୁ ମୋଗଲର ଚେଷ୍ଟା ନିଷ୍ଫଳ ହେଲା ଏବଂ ଶିବାଜୀଙ୍କ ସଂରକ୍ଷଣ ସମ୍ଭବପର ହେଲା ।

ଇଷ୍ଟମନ୍ତ୍ର ଯେତିକି ସିଦ୍ଧ ହୋଇପାରେ ଇଷ୍ଟ ସେତିକି ପ୍ରସନ୍ନ ହୁଅନ୍ତୁ ଏବଂ ପ୍ରଭାବଶାଳୀ ହୁଅନ୍ତି । ସେହି ଅନୁଯାୟୀ ସେତିକି ଅଧିକ ରକ୍ଷା ସମ୍ଭବପର ହୋଇଯାଏ । ଇଷ୍ଟମାନଙ୍କ ମଧ୍ୟରେ ଇଷ୍ଟ, ସମସ୍ତଙ୍କ ଇଷ୍ଟ ପରମ ପିତା ହେଉଛନ୍ତି ନିଜର ଆତ୍ମଦେବ ।

## ଉପାସନାର ଫଳ

ମନ୍ତ୍ର ତିନି ପ୍ରକାର : ସାବରୀ ମନ୍ତ୍ର, ତାନ୍ତ୍ରିକ ମନ୍ତ୍ର ଏବଂ ବୈଦିକ ମନ୍ତ୍ର । ସାବରୀ ମନ୍ତ୍ର ସିଦ୍ଧି ଦାନ କରନ୍ତି, ତାନ୍ତ୍ରିକ ମନ୍ତ୍ର ତାନ୍ତ୍ରିକ ଚମତ୍କାର ଦେଖାନ୍ତି ଏବଂ ବୈଦିକ ମନ୍ତ୍ର ଆମକୁ ଆତ୍ମଶାନ୍ତି ପ୍ରଦାନ କରନ୍ତି ।

ବୈଦିକ ମନ୍ତ୍ର ଦ୍ୱାରା ଋଦ୍ଧି-ସିଦ୍ଧି ଉପଲବ୍ଧ ହୁଏ । ସେହି ମନ୍ତ୍ର ବଳରେ ଭୋଗ ଏବଂ ମୋକ୍ଷ ପ୍ରାପ୍ତ ହୁଏ, ଯେବେକି ସାବରୀ ଏବଂ ତାନ୍ତ୍ରିକ ମନ୍ତ୍ର ଦ୍ୱାରା ମୋକ୍ଷ ପ୍ରାପ୍ତି ଅସମ୍ଭବ । ସେଥିରେ ଐହିକ ସଫଳତା ଏବଂ ଭୋଗ ପ୍ରାପ୍ତ ହୁଏ, କିନ୍ତୁ ଶ୍ରେଷ୍ଠ ସାଧକ ସେଥିପ୍ରତି ଆକର୍ଷିତ ହୁଅନ୍ତି ନାହିଁ । ସେ ସିଦ୍ଧିର ଆଧାରସ୍ୱରୂପ ନିଜ ଆତ୍ମାରେ, ନିଜ ବ୍ରହ୍ମସ୍ୱରୂପରେ ଜାଗ୍ରତ ହୁଅନ୍ତି ।

ସମସ୍ତ ବୈଦିକ ମନ୍ତ୍ରରେ ପାଞ୍ଚ ଇଷ୍ଟଦେବ ଅଛନ୍ତି : ଶ୍ରୀ ଗଣପତି, ଶ୍ରୀ ଶିବ, ଶ୍ରୀ ବିଷ୍ଣୁ, ଶ୍ରୀ ସୂର୍ଯ୍ୟ ଏବଂ ଭଗବତୀ ଅମ୍ବା । ଏହି ପଞ୍ଚଦେବଙ୍କ ମଧ୍ୟରୁ କୌଣସି ଏକ ଦେବଙ୍କ ଉପାସନା ଯେ ଅତି ନିର୍ମଳ ହୃଦୟରେ ଶ୍ରଦ୍ଧା-ଭକ୍ତିରେ କରେ, ସେହି ଦେବତାଙ୍କ ମନ୍ତ୍ର ଜପ ଦ୍ୱାରା, ଦର୍ଶନ ଦ୍ୱାରା ତାଙ୍କ ପ୍ରତି ଥିବା ଶ୍ରଦ୍ଧା ଭାବନା ହେତୁ ତାଙ୍କ ଅନ୍ତରର ଯୋଗ୍ୟତା ବୃଦ୍ଧିପ୍ରାପ୍ତ ହୁଏ ଏବଂ ସେହି ଦେବତା ତାଙ୍କୁ କୌଣସି ଠାରେ ଅବସ୍ଥିତ ବ୍ରହ୍ମଜ୍ଞାନୀ ସଦ୍‌ଗୁରୁଦେବଙ୍କ ନିକଟକୁ ପଠାଇ ଦିଅନ୍ତି । କେବେ ନା କେବେ, କୌଣସି ଜନ୍ମରେ ହେଉନା କାହିଁକି ଆମେ ଏହି ପଞ୍ଚଦେବଙ୍କ ମଧ୍ୟରୁ କାହାକୁ ନିଶ୍ଚିତ ଆରାଧନା ଏବଂ ଅର୍ଚ୍ଚନା କରିଥିବୁ ଯେଉଁ ପୁଣ୍ୟବଳ ଆମକୁ ସଦ୍‌ଗୁରୁଙ୍କ ସାନ୍ନିଧ ଲାଭ କରିବାରେ ସହାୟକ ହୋଇଛି । ଶ୍ରୀରାମକୃଷ୍ଣଦେବ

ଶକ୍ତିଙ୍କ ଉପାସନା କରିଥିଲେ । ଭଗବତୀ କାଳୀଙ୍କ ଆରାଧନା କରିଥିଲେ । ତେଣୁ ସେ ଘରେ ବସି ବ୍ରହ୍ମନିଷ୍ଠ ସଦ୍‌ଗୁରୁ ଶ୍ରୀତୋତାପୁରୀ ମହାରାଜଙ୍କୁ ପାଇଥିଲେ ।

ଈଶ୍ୱରୋପାସନା, ଆରାଧନା, ଶ୍ରଦ୍ଧା-ଭକ୍ତିର ପୁଣ୍ୟ ଆମକୁ ଅନ୍ତର୍ଯ୍ୟାମୀ ଆତ୍ମଦେବଙ୍କ ସହିତ ଏକାକାର କରିଦେବା ପାଇଁ, ଏପରି ସଦ୍‌ଗୁରୁଙ୍କ ପ୍ରାପ୍ତି କରାଇଦିଏ । ଯଦି ଆମେ ଏପରି କୌଣସି ଉପାସନା, ଆରାଧନା କରି ନାହୁଁ ଏବଂ ଆମ ଠାରେ ଶ୍ରଦ୍ଧା-ଭକ୍ତି ନାହିଁ, ପୁଣି ଆମ ପାଇଁ ଯଦି ନିୟମ କରି ଦିଆଯାଏ ଯେ ତୁମେ ବ୍ରହ୍ମଚାରୀ ସନ୍ଥଙ୍କ ଦର୍ଶନ କର ନଚେତ୍ ତୁମକୁ ହଜାରେ ଟଙ୍କା ଜୋରିମାନା ଦଣ୍ଡ ଭୋଗିବାକୁ ହେବ । ତେବେ ଆମେ ଅବଶ୍ୟ ବାଧ୍ୟ ହୋଇ ଦର୍ଶନ କରିବାକୁ ଯାଇପାରୁ କିନ୍ତୁ ସେ ଦର୍ଶନରେ ଏବଂ ତାଙ୍କ ସାନ୍ନିଧ୍ୟରେ ଶାନ୍ତି ଓ ଆନନ୍ଦର ଅନୁଭୂତି ମିଳିବ ନାହିଁ । '' ଠିକ୍ ଅଛି... ଚାଲ । କେବଳ ହାଜରା ପକାଇ ଆସିବା... ।'' ଯେପରି ଅଫିସରେ କେତେକ କାମଚୋର କର୍ମଚାରୀ ହାଜରା ପକାଇ ଅଫିସରୁ ଖସି ଆସି ଏଣେ ତେଣେ ବାହାରେ ବୁଲୁଥାନ୍ତି, ସେହିପରି ଆମେ ନାମକୁ ମାତ୍ର ସନ୍ଥଙ୍କୁ ଦର୍ଶନ କରି ଚାଲି ଆସୁ । ଯଦି ଆମ ଠାରେ ପୁଣ୍ୟ ସଞ୍ଚିତ ଥାଏ, ତେବେ ବିନା ଫାଇଦାର ସନ୍ଥ ଦର୍ଶନ ପାଇଁ ସ୍ୱଇଚ୍ଛାରେ ଆକର୍ଷିତ ହୋଇଥାଉ ଓ ସତ୍‌ସଙ୍ଗ ଶୁଣି ଆନନ୍ଦିତ ହୋଇଥାଉ । ଆମର ପୁଣ୍ୟ କମ୍ ହେଲେ ଆମେ ସନ୍ଥଙ୍କ ସାନ୍ନିଧ୍ୟରୁ ପୂରା ଲାଭ ପାଇବା ନାହିଁ । ସନ୍ଥଙ୍କ ସାନ୍ନିଧ୍ୟରେ ଆମର ଯଦି ରୁଚି ଅଛି ଜାଣିବାକୁ ହେବ ଆମର ପୁଣ୍ୟ ଫଳବତୀ ହୋଇଛି ।

## ଦୀକ୍ଷାମାତ୍ରେ ମହାପାତକ ନାଶ ହୁଏ

ମନ୍ତ୍ରଦୀକ୍ଷା ଦ୍ୱାରା ଆମର ସାଧନାର ବହୁ ପ୍ରତିଶତ କାର୍ଯ୍ୟ ପୂରା ହୋଇଯାଏ । ମନ୍ତ୍ରରେ ଚୈତନ୍ୟ ସତ୍ତା ବିଦ୍ୟମାନ ।

କାଶୀରେ ଜଣେ ବ୍ରହ୍ମଚାରୀ ବ୍ରାହ୍ମଣ ଯୁବକ ବିଦ୍ୟା ସମ୍ପୂର୍ଣ୍ଣ କରି ସଂସାର ରଚନା ନିମନ୍ତେ ଇଚ୍ଛା କଲେ । କିନ୍ତୁ ଧନ ନ ଥିଲା । ସେ ଗାୟତ୍ରୀ ମନ୍ତ୍ରର ଅନୁଷ୍ଠାନ କଲେ । ଦିନ ରାତି ନିଷ୍ଠାରେ ଲାଗିଥାନ୍ତି । ଛଅ ମାସରେ ଗୋଟିଏ ଥର ଅନୁଷ୍ଠାନ ପୂର୍ଣ୍ଣ ହୁଏ । ଗୋଟିଏ ଅନୁଷ୍ଠାନରେ ଚବିଶ ଲକ୍ଷ ମନ୍ତ୍ରଜପ, ବାରବର୍ଷରେ ଏହିପରି ତେଇଶ

ଅନୁଷ୍ଠାନ ସମ୍ପାଦନ କଲେ, କିନ୍ତୁ କିଛି ଫଳ ହେଲା ନାହିଁ, ଧନ ଲାଭ ହେଲା ନାହିଁ ।

ସେ ଚବିଶ ବର୍ଷ ବୟସ ପର୍ଯ୍ୟନ୍ତ ବିଦ୍ୟାଧ୍ୟୟନ କଲେ, ବାର ବର୍ଷ ଅନୁଷ୍ଠାନ କରିବାରେ ବିତିଗଲା । ଛତିଶ ବର୍ଷ ବୟସ ହୋଇଗଲା । ସେ ଭାବିଲେ : ''ବର୍ତ୍ତମାନ ବିବାହ କରି କ'ଣ ହେବ ? ଧନ ଯଦି ବି ମିଳିଯାଏ, ବିବାହ ମଧ୍ୟ ଯଦି ହୋଇଯାଏ ତେବେ ଚାରି ପାଞ୍ଚ ବର୍ଷରେ ସନ୍ତାନ ହେବ । ମୋତେ ୪୦-୪୫ ବର୍ଷ ବୟସ ବେଳକୁ ସନ୍ତାନର ବୟସ ମାତ୍ର ଏକ ବର୍ଷ ହୋଇଥିବ । ମୁଁ ଯେତେବେଳେ ବୁଢ଼ା ହୋଇଯାଇଥିବି, ମୃତ୍ୟୁକାଳ ନିକଟ ହୋଇଯାଇଥିବ, ସନ୍ତାନ ପାଇ ହେବ କ'ଣ ? ଏହି ବିବାହର କିଛି ଅର୍ଥ ନାହିଁ । ''

ସେ ସଜ୍ଜନ ବିବାହ କରିବା ଇଚ୍ଛାକୁ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କଲେ । ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରି ଯେତେବେଳେ ତର୍ପଣ କଲେ ଏବଂ ଗାୟତ୍ରୀ ମନ୍ତ୍ର ଜପ ଆରମ୍ଭ କଲେ ସେତେବେଳେ ପ୍ରକାଶ... ପ୍ରକାଶ... ଦେଖିବାକୁ ଲାଗିଲେ । ସେହି ପ୍ରକାଶପୁଞ୍ଜରେ ଗାୟତ୍ରୀ ମାତାଙ୍କ ଆବିର୍ଭାବ ହେଲା । ସେ କହିଲେ : **''ବରଂ ବ୍ରୟାତ୍ । ବର ମାଗ ।''**

ସେ କହିଲେ : ''ମା ! ବର ମାଗିବା ପାଇଁ ତ ତେଇଶ ଅନୁଷ୍ଠାନ କଲି । **ଧନବାନ ଭବ... ପୁତ୍ରବାନ ଭବ... ଐଶ୍ୱର୍ଯ୍ୟବାନ ଭବ...** ଏହି ବରଦାନ ମାଗିବା ପାଇଁ ଏତେ ସବୁ ପରିଶ୍ରମ କରିଥିଲି । ବର୍ତ୍ତମାନ ମୁଁ ସନ୍ନ୍ୟାସୀ । ବରଦାନର ଆବଶ୍ୟକତା ଆଉ ନାହିଁ । ଇଚ୍ଛାକୁ ତ୍ୟାଗ କରିଦେଲି । ବର୍ତ୍ତମାନ ଆପଣ ଆସିଲେ କେଉଁ ଲାଭ ? ମାତା ! ଆପଣ ପୂର୍ବରୁ କାହିଁକି ଦର୍ଶନ ଦେଲେ ନାହିଁ !

ଏହି ସଜ୍ଜନ ଆଉ କିଏ ନୁହେଁ, ସେ ଥିଲେ ସ୍ୱନାମଧନ୍ୟ ଶ୍ରୀ ବିଦ୍ୟାରଣ୍ୟ ସ୍ୱାମୀ, ଯିଏ ସଂସ୍କୃତରେ **'ପଞ୍ଚଦଶୀ'** ନାମକ ଗ୍ରନ୍ଥ ରଚନା କରିଥିଲେ ।

ଶ୍ରୀ ବିଦ୍ୟାରଣ୍ୟ ସ୍ୱାମୀ ପଚାରିଲେ : ''ମା ! ତୁମେ କାହିଁକି ଏତେ ଡ଼େରି କଲ ? ମା' କହିଲେ : ''ତୁମର ପୂର୍ବଜନ୍ମରେ ଚବିଶ ମହାପାତକ ଥିଲା । ତୁମର ଗୋଟିଏ ଗୋଟିଏ ଅନୁଷ୍ଠାନରେ ଗୋଟିଏ ଗୋଟିଏ ମହାପାତକ କଟୁଥିଲା । ତେଣୁ ଐହିକ ଜଗତରେ ଅନୁଷ୍ଠାନର ଯାହା ପ୍ରଭାବ ଦେଖାଦେବା କଥା ତାହା ପ୍ରକଟିତ

ହୋଇ ପାରିଲା ନାହିଁ । ଯଦିଓ ମୁଁ ପ୍ରକଟିତ ହୋଇଥାନ୍ତି ତୁମେ ମୋତେ ଦର୍ଶନ କରିବାରେ ଅସମର୍ଥ ହୁଅନ୍ତ । ଗୋଟି ଗୋଟି କରି ତେଇଶ ଅନୁଷ୍ଠାନ ବଳରେ ତେଇଶ ମହାପାତକ ନଷ୍ଟ ହେଲା । ସନ୍ନ୍ୟାସ ଦୀକ୍ଷା ନେବା ମାତ୍ରେ ଚବିଶ ମହାପାତକ କଟିଗଲା ଏବଂ ବର୍ତ୍ତମାନ ପ୍ରଥମ ମନ୍ତ୍ରର ଉଚ୍ଚାରଣ ମାତ୍ରେ ମୁଁ ପ୍ରକଟିତ ହେଲି ।''

## ମଳିନ ତତ୍ତ୍ୱରୁ ରକ୍ଷା

ମନ୍ତ୍ର ନିଶ୍ଚିତ ରୂପେ ତାର କାମ କରେ । ଯେପରି ପାଣିରେ ପଥରଟିଏ ପକାଇବା ମାତ୍ରେ ତାହା ବର୍ତ୍ତୁଳାକାର ତରଙ୍ଗ ସୃଷ୍ଟି କରେ, ସେହିପରି ମନ୍ତ୍ରଜପ ଦ୍ୱାରା ଆମର ଚେତନାରେ ଆଧ୍ୟାତ୍ମିକ ତରଙ୍ଗ ଉତ୍ପନ୍ନ ହୁଏ । ସୂକ୍ଷ୍ମରୂପେ ଆମ ଚେତନାରେ ଏକ ପ୍ରକାଶିତ ତେଜୋବଳୟର ନିର୍ମାଣ ହୁଏ । ସୂକ୍ଷ୍ମ ଜଗତରେ ଏହାର ପ୍ରଭାବ ପଡ଼େ । ମଳିନ ତୁଚ୍ଛ ବସ୍ତୁ ସେହି ତେଜୋମଣ୍ଡଳ ଯୋଗୁଁ ଆମ ନିକଟକୁ ଆସି ପାରନ୍ତି ନାହିଁ ।

**'ଶ୍ରୀ ମଧୁସୂଦନୀ ଟୀକା'** ଶ୍ରୀ ମଦ୍‌ଭଗବଦ୍‌ଗୀତାର ପ୍ରସିଦ୍ଧ ଏବଂ ମହତ୍ତ୍ୱପୂର୍ଣ୍ଣ ଟୀକାମାନଙ୍କ ମଧ୍ୟରେ ଅନ୍ୟତମ । ସେହି ଟୀକାର ରଚୟିତା ଶ୍ରୀ ମଧୁସୂଦନ ସରସ୍ୱତୀ ସଂକଳ୍ପ କରି ଯେତେବେଳେ ଟୀକା ଲେଖିବା କାର୍ଯ୍ୟ ଆରମ୍ଭ କରିବାକୁ ବସିଛନ୍ତି ହଠାତ୍ ଜଣେ ମସ୍ତ ପରମହଂସ ସନ୍ନ୍ୟାସୀ ଏକୁଟିଆ ତାଙ୍କ ଦ୍ୱାର ଖୋଲି ଭିତରକୁ ପଶି ଆସି କହିଲେ :

''ଆରେ ମଧୁସୂଦନ ! ତୁ ଯେହେତୁ ଗୀତା ଉପରେ ଟୀକା ଲେଖିବାକୁ ଯାଉଛୁ, ତୋର ଗୀତାକାରଙ୍କ ନିଶ୍ଚିତ ସାକ୍ଷାତ ହୋଇଅଛି ନା କେବଳ ସେମିତି ବସି ଯାଇଛୁ କଲମ ଧରି ? ଭଗବାନ ଶ୍ରୀକୃଷ୍ଣଙ୍କ ଦର୍ଶନ ହୋଇଛି ନା ଖାଲି ସେହିପରି ତାଙ୍କ ବଚନକୁ ବ୍ୟାଖ୍ୟା କରିବାକୁ ମନ ବଳେଇଛୁ ?

ଶ୍ରୀ ମଧୁସୂଦନ ଥିଲେ ବେଦାନ୍ତୀ, ଅଦ୍ୱୈତବାଦୀ । ସେ କହିଲେ : ''ଦର୍ଶନ ତ କରି ନାହିଁ । ନିରାକାର ବ୍ରହ୍ମ ପରମାତ୍ମା ସମସ୍ତଙ୍କ ଠାରେ ସମରୂପରେ ବିଦ୍ୟମାନ । ଶ୍ରୀକୃଷ୍ଣ ରୂପରେ ତାଙ୍କୁ ଦର୍ଶନ କରିବାର କୌଣସି ପ୍ରୟୋଜନ ନାହିଁ । ମୁଁ କେବଳ ତାଙ୍କ ଗୀତାର ଅର୍ଥ ସ୍ପଷ୍ଟ କରିବାକୁ ଯାଉଛି ।''

"ନା... । ପ୍ରଥମେ ତାଙ୍କୁ ଦର୍ଶନ କର । ପ୍ରଥମେ ତାଙ୍କ ଶାସ୍ତ୍ର ଉପରେ ଟୀକା କରିବୁ । ନେ ଏହି ମନ୍ତ୍ର । ଛଅ ମାସ ଏହାର ଅନୁଷ୍ଠାନ କରିବୁ । ଭଗବାନ ପ୍ରକଟ ହେବେ । ତାଙ୍କୁ ସାକ୍ଷାତ କରି ଲେଖିବା କାମ ଆରମ୍ଭ କରିବୁ ।

ମନ୍ତ୍ର ଦେଇ ବାବାଜୀ ଚାଲିଗଲେ । ମଧୁସୂଦନ ଅନୁଷ୍ଠାନ ଆରମ୍ଭ କଲେ । ଛଅ ମାସ ପୂର୍ଣ୍ଣ ହୋଇଗଲା, କିନ୍ତୁ ଶ୍ରୀକୃଷ୍ଣଙ୍କ ଦର୍ଶନ ହେଲା ନାହିଁ । ଅନୁଷ୍ଠାନରେ କିଛି ତ୍ରୁଟି ରହିଯାଇଥିବ ଭାବି ଦ୍ୱିତୀୟ ଥର ପାଇଁ ପୁଣି ଛଅ ମାସ ଅନୁଷ୍ଠାନ କରିବାକୁ ଲାଗିଲେ । ତଥାପି ଶ୍ରୀକୃଷ୍ଣ ଦର୍ଶନ ଦେଲେ ନାହିଁ ।

ଶ୍ରୀ ମଧୁସୂଦନଙ୍କ ମନରେ ଗ୍ଲାନି ହେଲା । ସେ ଭାବିଲେ : "କୌଣସି ଏକ ଅଜ୍ଞାତ ବାବାଜୀଙ୍କ କଥାରେ ପଡ଼ି ମୁଁ ବାରମାସ ଅନୁଷ୍ଠାନରେ ବୃଥା ନଷ୍ଟ କଲି । କାହିଁ ସର୍ବତ୍ର ବ୍ରହ୍ମ ଦର୍ଶନ କରିବା ବାଲା ମୁଁ ଅଦ୍ୱୈତବାଦୀ ଏବଂ କାହିଁ 'ହେ କୃଷ୍ଣ.. ହେ ଭଗବାନ... ଦର୍ଶନ ଦିଅ... ଦର୍ଶନ ଦିଅ...' ବୋଲି ବିକଳ ହେବା, ମୁଣ୍ଡ ବାଡ଼େଇବା ! ଶ୍ରୀକୃଷ୍ଣଙ୍କ ଆତ୍ମା ଯେ ସେ ତ ମୋର ଆତ୍ମା, ସେହି ଆତ୍ମାରେ ନିମଗ୍ନ ରହିଥିଲେ ଠିକ୍ ହୋଇଥା'ନ୍ତା । ଶ୍ରୀକୃଷ୍ଣ ତ ଆସିଲେ ନାହିଁ, ପୂରା ବର୍ଷ ବିତିଗଲା, ତେବେ ଟୀକା ବର୍ତ୍ତମାନ ଲେଖିବି କଣ ?"

ସେ ଏହିପରି ଭାବି ଚିନ୍ତାରେ ବୁଡ଼ିଗଲେ । ମନ ଭାରାକ୍ରାନ୍ତ ହୋଇଗଲା । ବର୍ତ୍ତମାନ ସେ ଟୀକା ଲେଖିପାରୁଛନ୍ତି ନା ତୃତୀୟ ଥର ପାଇଁ ଅନୁଷ୍ଠାନ ଆରମ୍ଭ କରି ପାରୁଛନ୍ତି ? ଚାଲିଲେ ତୀର୍ଥାଟନ କରିବା ପାଇଁ । ତୀର୍ଥରେ ପହଞ୍ଚି ଦେଖିଲେ ଜଣେ ଚମାର (ମୋଚି) ତାଙ୍କ ଆଡ଼କୁ ଆସୁଛି । ସେ ଚମାର ତାଙ୍କୁ ପ୍ରଥମ ଥର ପାଇଁ ଦେଖୁଛି ଏବଂ ସେ ମଧ ଚମାରକୁ ପ୍ରଥମ ଥର ପାଇଁ ଦେଖୁଛନ୍ତି । ଚମାର କହିଲା : "ବାସ୍ ସ୍ୱାମୀଜୀ ! ଦୁଇଟି ଅନୁଷ୍ଠାନ କରି ଥକିଗଲେ ନା କ'ଣ ?"

ଶ୍ରୀ ମଧୁସୂଦନ ସ୍ୱାମୀ ଚମକି ପଡ଼ିଲେ । ଭାବିଲେ :"ଆରେ । ମୁଁ ଅନୁଷ୍ଠାନ କରିଛି, ଏ କଥା ତ ମୋ ବିନା ଅନ୍ୟ କେହି ଜାଣି ନାହିଁ । ଏହି ଚମାର ଜାଣିଲା କିପରି ?"

ସେ ଚମାରକୁ ପଚାରିଲେ : "ତୁ ଏହି ଖବର ପାଇଲୁ କିପରି ?"

"କୌଣସି ପ୍ରକାରରେ ଖବର ପାଇଲି । ମୁଁ ଯାହା କହୁଛି ତାହା ଠିକ୍ କି ନୁହେଁ ? ଦୁଇଟି ଅନୁଷ୍ଠାନ କରି ଥକି ଯାଇ ଆସିଛ । କିଛି ଠିକ୍ କରି ନ ପାରି ବ୍ୟସ୍ତ ହୋଇ ଏହି ଆଡ଼େ ଚାଲି ଆସିଛ । କହ, ମୋ କଥା ସତ କି ନୁହେଁ ?

"ଭାଇ ! ତୁ ଅନ୍ତର୍ଯ୍ୟାମୀ ଗୁରୁ ପରି ଜଣା ପଡୁଛୁ । ସତ୍ୟ କହ, ତୁ କିପରି ଜାଣିଲୁ ?"

"ସ୍ୱାମୀଜୀ ! ମୁଁ ଅନ୍ତର୍ଯ୍ୟାମୀ ନୁହେଁ କି ଗୁରୁ ମଧ୍ୟ ନୁହେଁ । ମୁଁ ତ ଜାତିର ଚମାର । ମୁଁ ଭୂତକୁ ବଶ କରିଛି । ମୋର ଭୂତ ଆପଣଙ୍କ ହୃଦୟର କଥା ମୋତେ କହିଛି ।"

"ଭାଇ ! ଦେଖ... ଶ୍ରୀକୃଷ୍ଣଙ୍କର ତ ଦର୍ଶନ ହେଲା ନାହିଁ । କିଛି ଯାଏ ଆସେ ନାହିଁ । ପ୍ରଣବ ଜପ କଲି, କୌଣସି ଦର୍ଶନ ହେଲା ନାହିଁ । ଗାୟତ୍ରୀ ଜପ କଲି, କିନ୍ତୁ ଦର୍ଶନ ମିଳିଲା ନାହିଁ । ବର୍ତ୍ତମାନ ତୁ ତୋର ଭୂତର ଦର୍ଶନ ହେଲେ କରାଇ ଦେ ।"

"ସ୍ୱାମୀଜୀ ! ମୋ ଭୂତ ତ ତିନି ଦିନ ମଧ୍ୟରେ ଦର୍ଶନ ଦେବ । ୭୨ ଘଣ୍ଟା ମଧ୍ୟରେ ସେ ଆସିଯିବ । ନିଅନ୍ତୁ ଏହି ମନ୍ତ୍ର ଏବଂ ତା ବିଧି ।"

ଶ୍ରୀ ମଧୁସୂଦନ ସ୍ୱାମୀଙ୍କର ବିଧିପାଳନ କରିବାରେ କ'ଣ ଅବହେଳା ହୋଇପାରେ । ସେ ବିଧି ସହିତ ଜପ କଲେ । ଦିନେ ଗଲା, ଦୁଇ ଦିନ ଗଲା, ତୃତୀୟ ଦିନ ବି ଚାଲିଗଲା ଏବଂ ଚତୁର୍ଥ ଦିନ ଯିବା ଉପରେ, ୭୨ ଘଣ୍ଟା ତ ପୂରା ହୋଇଗଲା । ଭୂତ ତ ଆସିଲା ନାହିଁ । ସ୍ୱାମୀଜୀ ଚାଲିଲେ ଚମାର ପାଖକୁ । କହିଲେ : "ଶ୍ରୀକୃଷ୍ଣଙ୍କ ଦର୍ଶନ ତ ହେଲା ନାହିଁ, ତୋର ଭୂତର ବି ହୋଇ ପାରିଲା ନାହିଁ ।"

"ସ୍ୱାମୀଜୀ ! ତା'ର ଦେଖାଦେବା ଉଚିତ ?

" ଦେଖା ହେଲା ନାହିଁ ତ !"

"ମୁଁ ପ୍ରତିଦିନ ତାକୁ ଡ଼ାକେ, ପ୍ରତିଦିନ ତାକୁ ଦେଖେ । ଅପେକ୍ଷା କରନ୍ତୁ, ମୁଁ ଡାକୁଛି ତାକୁ, 'ସେ ଗଲା, ନିଜ ବିଧି ଅନୁଯାୟୀ ଭୂତକୁ ଡକାଇଲା । ତା'

ସହିତ କଥାବାର୍ତ୍ତା କରି ଫେରିଆସି କହିଲା : ''ବାବାଜୀ ! ସେ ଭୂତ କହୁଛି କି ମଧୁସୂଦନ ସ୍ୱାମୀ ଯେମିତି ହିଁ ମୋ ନା' ସ୍ମରଣ କଲେ, ଡାୟଲର ପ୍ରଥମ ନମ୍ବର ଘୁରାଇବା ସଙ୍ଗେ ସଙ୍ଗେ ମୁଁ ଟାଣି ହୋଇ ଆସିବାକୁ ଲାଗିଲି । କିନ୍ତୁ ତାଙ୍କ ନିକଟକୁ ଯିବା ମାତ୍ରେ ଅଗ୍ନି ଅଗ୍ନି... ଅଗ୍ନି ଯେପରି ମାଡ଼ି ଆସିଲା ପରି ବୋଧ ହେଲା । ତାଙ୍କ ତେଜ ମୁଁ ସମ୍ଭାଳି ପାରିଲି ନାହିଁ । ସେ **'ଓଁ'** ର ଅନୁଷ୍ଠାନ କରିଛନ୍ତି । ତେଣୁ ତାଙ୍କର ଆଧ୍ୟାତ୍ମିକ ଓଜ ଏତେ ବଢ଼ିଯାଇଛି ଯେ ମୋ ପରି ମ୍ଲେଚ୍ଛ ତାଙ୍କ ପାଖରେ ଠିଆ ହେବା ଅସମ୍ଭବ । ବର୍ତ୍ତମାନ ତୁମେ ମୋ ତରଫରୁ ତାଙ୍କୁ ହାତ ଯୋଡ଼ି ପ୍ରାର୍ଥନା କରିବ କି ପୁଣି ସେ ଅନୁଷ୍ଠାନ କରନ୍ତୁ । ତାଙ୍କର ସବୁ ପ୍ରତିବନ୍ଧ ଦୂର ହୋଇଯିବ ଏବଂ ଭଗବାନ ଶ୍ରୀକୃଷ୍ଣ ପ୍ରାପ୍ତ ହେବେ । ତା'ପରେ ଗୀତାର ଯେଉଁ ଟୀକା ଲେଖା ହେବ ତାହା ଅତି ପ୍ରସିଦ୍ଧ ହେବ ।

ଶ୍ରୀ ମଧୁସୂଦନ ସ୍ୱାମୀ ପୁନର୍ବାର ଅନୁଷ୍ଠାନ କଲେ । ଭଗବାନ ଶ୍ରୀକୃଷ୍ଣଙ୍କ ଦର୍ଶନ ହେଲା । ତା'ପରେ **'ଶ୍ରୀମଦ୍‌ଭଗବଦ୍‌ଗୀତା'**ର ଟୀକା ଲେଖା ହେଲା । ଆଜି ସୁଦ୍ଧା **'ଶ୍ରୀ ମଧୁସୂଦନୀ ଟୀକା'** ନାମରେ ତାହା ଜଗତ ପ୍ରସିଦ୍ଧ ।

ଯାହାଙ୍କୁ ଗୁରୁମନ୍ତ୍ର ମିଳିଛି ଏବଂ ଠିକ୍ ଢଙ୍ଗରେ ତାର ଜପ କରାଯାଇଛି, ସେ କେତେ ବଡ଼ ଭୟାନକ ଶ୍ମଶାନ ଭିତରକୁ ଯାଆନ୍ତୁ ନା କାହିଁକି, ଯେତେ ଭୂତ-ପ୍ରେତଙ୍କ ଭିତରେ ପ୍ରବେଶ କରନ୍ତୁ ନା କାହିଁକି ସେ ଭୂତ-ପ୍ରେତ ତାଙ୍କ ଉପରେ ଆକ୍ରମଣ କରି ପାରିବ ନାହିଁ କି ଭୟଭୀତ କରାଇ ପାରିବ ନାହିଁ ।

**ପ୍ରାୟତଃ ସେହି ନିଗୁରା ଲୋକଙ୍କୁ (ଗୁରୁ କରି ନ ଥିବା ଅର୍ଥାତ୍ ମନ୍ତ୍ର ଗ୍ରହଣ କରି ନ ଥିବା) ଡାକିନୀ-ଶାକିନୀ ଇତ୍ୟାଦି ହଇରାଣ କରନ୍ତି,** ଯେଉଁମାନେ ଅଶୁଦ୍ଧ ଭୋଜନ କରନ୍ତି, ପ୍ରଦୋଷ କାଳରେ ଭୋଜନ ଓ ମୈଥୁନ କରନ୍ତି । ଯାହାର କୌଣସି ଇଷ୍ଟଦେବ ନାହାନ୍ତି, ଇଷ୍ଟମନ୍ତ୍ର ନାହିଁ ବା ଗୁରୁମନ୍ତ୍ର ନାହିଁ, ସେମାନଙ୍କ ଉପରେ ଭୂତ-ପ୍ରେତଙ୍କ ପ୍ରଭାବ ପଡ଼େ । ଯେ ସଦ୍‌ଗୁରୁଙ୍କ ଶିଷ୍ୟ ଅଟନ୍ତି, ଯାହାଙ୍କ ପାଖରେ ଗୁରୁମନ୍ତ୍ର ରହିଛି, ତାଙ୍କୁ ଭୂତ-ପ୍ରେତ କିଛି କରି ପାରିବେ ନାହିଁ ।

## ଅଦ୍ୱୈତରେ ସବୁ ମତର ପର୍ଯ୍ୟବସାନ

ଧର୍ମ ନାମରେ ଝଗଡ଼ା ଚାଲିଛି । ସମସ୍ତେ ଭିନ୍ନ ଭିନ୍ନ ଦେବତାଙ୍କୁ ମାନୁଛନ୍ତି । ସର୍ବଦେବଙ୍କ ମଧ୍ୟରେ ଯେଉଁ ଆତ୍ମଦେବ ବିଦ୍ୟମାନ ତାଙ୍କୁ ଯଦି ସମସ୍ତେ ମାନି ନିଅନ୍ତେ ତେବେ ଧର୍ମ ନାମରେ ଯେଉଁ ଅଘଟଣ ଘଟୁଛି ସେ ସବୁ ବନ୍ଦ ହୋଇ ଯାଆନ୍ତା । ଲୋକମାନେ ଯଦି ବେଦାନ୍ତିକ ଈଶ୍ୱରଙ୍କୁ ଆପଣାର କରି ନିଅନ୍ତେ ସବୁ ଝଗଡ଼ା ଝଞ୍ଝଟର ଅବସାନ ହୁଅନ୍ତା ।

ଜଣେ କହିବ : "ମୋର ଦେବତା ବଡ଼" । ଦ୍ୱିତୀୟ ବ୍ୟକ୍ତି କହିବ : "ମୋର ଦେବତା ବଡ଼ । ତୃତୀୟ ବ୍ୟକ୍ତି କହିବ :"ମୋର ବିଷ୍ଣୁ ବଡ଼", ଚତୁର୍ଥ କହିବ : 'ହନୁମାନ ବଡ଼' ପଞ୍ଚମ କହିବ : 'ଯିଶୁ ବଡ଼' । ଷଷ୍ଠ କହିବ : ମହମ୍ମଦ ବଡ଼' କିନ୍ତୁ ମହମ୍ମଦଙ୍କ ପୂର୍ବରୁ ଚୈତନ୍ୟ ଥିଲେ, ଯିଶୁଙ୍କ ପୂର୍ବରୁ ଯେଉଁ ଚୈତନ୍ୟ ବିଦ୍ୟମାନ ଥିଲେ, ଯେଉଁ ଚୈତନ୍ୟ ଆମର ଦେବୀ-ଦେବତାଙ୍କ ଠାରେ ଅଛନ୍ତି ସେହି ଚୈତନ୍ୟ ଆପଣଙ୍କ ଠାରେ ଏବଂ ଆମ ଠାରେ ଚମକୁଛନ୍ତି । ଏହି କଥାକୁ ଠିକ୍ ବୁଝି ନେଲେ ଝଗଡ଼ା ଶାନ୍ତ ହୋଇଯିବ । କିନ୍ତୁ ଖ୍ରୀଷ୍ଟିୟାନ୍ କହନ୍ତି : "ଯିଶୁ ବଡ଼ । ଶ୍ରୀକୃଷ୍ଣବାଲା କହନ୍ତି : 'ଶ୍ରୀକୃଷ୍ଣ ବଡ଼' । ଶ୍ରୀରାମବାଲା କହନ୍ତି : ଶ୍ରୀରାମ ବଡ଼' । ବାସ୍ତବିକତା ଜାଣିବାବାଲା କହେ :

**ଏକ ନୂର ତେ ସବ୍ ଜଗ ଉପଜା କୌନ ଭଲେ କୌନ ମନ୍ଦେ ?**

ପରମାତ୍ମା ଏକ । କେହି ବଡ଼ ନୁହନ୍ତି କି ଛୋଟ ନୁହନ୍ତି । ବଡ଼ ଠାରୁ ବଡ଼ ଯେଉଁ ଆତ୍ମା ବିଦ୍ୟମାନ, ତାକୁ ଜାଣିବା ବାଲାଙ୍କୁ ମୋର ନମସ୍କାର । ଓଁ... ଓଁ... ଓଁ...

ଏକ ଈଶ୍ୱରବାଦ ଅନେକ ଈଶ୍ୱର ସ୍ୱୀକାର କରି ନେଇଛନ୍ତି । ଏହାର କାରଣ ଏହି କି : ଈଶ୍ୱର ତ ଏକ ଅଟନ୍ତି କିନ୍ତୁ ଯାହାଙ୍କ ହୃଦୟରେ ସେ ପ୍ରକଟିତ ହୋଇଛନ୍ତି, ସେ ଈଶ୍ୱରତୁଲ୍ୟ ଅଟନ୍ତି, ତେଣୁ ତାଙ୍କର ଆଦର କରାଯାଏ ।

**ସବ୍ ଘଟ ମେରା ସାଁଇୟାଁ ଖାଲୀ ଘଟ ନ କୋୟ ।**
**ବଲିହାରୀ ୱା ଘଟ କୀ ଜା ଘଟ ପରଗଟ ହୋୟ ॥**
**କବୀରା କୂଆଁ ଏକ ହୈ ପନିହାରୀ ଅନେକ ।**
**ନ୍ୟାରେ ନ୍ୟାରେ ବର୍ତନୋଁ ମେ ପାନୀ ଏକ କା ଏକ ॥**

# ଅଖଣ୍ଡ ଆତ୍ମଦେବଙ୍କ ଉପାସନା

ଭଗବାନ ଶଙ୍କର ଶ୍ରୀ ବଶିଷ୍ଠ ମୁନିଙ୍କୁ କହୁଛନ୍ତି :

"ହେ ବ୍ରାହ୍ମଣ ! ଯାହା ଉତ୍ତମ ଦେବ-ଅର୍ଚ୍ଚନ ଅଟେ ଏବଂ ଯାହା କଲେ ଜୀବ ସଂସାର-ସାଗରରୁ ପାର ହୁଏ, ତାହା ଶୁଣ । ହେ ବ୍ରାହ୍ମଣ ଶ୍ରେଷ୍ଠ ! ପୁଣ୍ଡରୀକାକ୍ଷ ବିଷ୍ଣୁ ଦେବ ନୁହନ୍ତି ଏବଂ ତ୍ରିଲୋଚନ ଶିବ ମଧ୍ୟ ଦେବ ନୁହନ୍ତି । କମଳରୁ ଜାତ ବ୍ରହ୍ମା ମଧ୍ୟ ଦେବ ନୁହନ୍ତି ଏବଂ ସହସ୍ର ନେତ୍ରଧାରୀ ଇନ୍ଦ୍ର ମଧ୍ୟ ଦେବ ନୁହନ୍ତି । ନା ପବନ, ନା ସୂର୍ଯ୍ୟ, ନା ଅଗ୍ନି, ନା ଚନ୍ଦ୍ରମା, ନା ବ୍ରାହ୍ମଣ, ନା କ୍ଷତ୍ରିୟ, ନା ତୁମେ ନା ମୁଁ, କେହି ଦେବ ନୁହନ୍ତି । ଅକୃତ୍ରିମ, ଅନାଦି, ଅନନ୍ତ ଓ ସମ୍ବିତ୍‌ରୂପ ହିଁ ଦେବ ଅଟନ୍ତି । ଆକାରାଦିକ ପରିଛିନ୍ନରୂପ ଅଟନ୍ତି । ସେ ସବୁ ବାସ୍ତବରେ କିଛି ନୁହନ୍ତି । ଏକ ଅକୃତ୍ରିମ, ଅନାଦି, ଅନନ୍ତ ଚୈତନ୍ୟ ରୂପ ଦେବ ଅଟନ୍ତି । ସେ ହିଁ 'ଦେବ' ଶବ୍ଦର ବାଚକ ଅଟନ୍ତି ଏବଂ ତାଙ୍କ ଅର୍ଚ୍ଚନା ହିଁ ପ୍ରକୃତ ପୂଜା ଅଟେ । ଯାହାଙ୍କ ଠାରୁ ଏହି ସବୁ ଜାତ ଏବଂ ଯେଉଁ ସତ୍ତା ଶାନ୍ତ, ଆତ୍ମରୂପ ଅଟେ, ସେହି ଦେବଙ୍କୁ ସର୍ବତ୍ର ବ୍ୟାପ୍ତ ଦେଖିବା ତାଙ୍କର ପୂଜା ଅଟେ । ଯେ ସେହି ସମ୍ବିତତତ୍ତ୍ୱକୁ ଜାଣନ୍ତି ନାହିଁ, ତାଙ୍କ ପାଇଁ ସାକାର ଅର୍ଚ୍ଚନାର ବିଧାନ କରାଯାଇଛି, ଯେପରି, ଯେଉଁ ପୁରୁଷ ଯୋଜନ ପର୍ଯ୍ୟନ୍ତ ଚାଲିବା ପାଇଁ ଅକ୍ଷମ, ତା ପାଇଁ ଏକ କୋଶ ବା ଦୁଇ କୋଶ ଚାଲିବା ହିତକର, ସେହିପରି ଯେଉଁ ପରୁଷ ଅକୃତ୍ରିମ ଦେବଙ୍କୁ ପୂଜା କରିପାରେ ନାହିଁ ତାଙ୍କ ପାଇଁ ସାକାର ପୂଜା ଉପକାରୀ ଅଟେ । ଯେ ପରିଛିନ୍ନ (ଖଣ୍ଡିତ)ଙ୍କ ଉପାସନା କରନ୍ତି, ତାଙ୍କୁ ଫଳ ମଧ୍ୟ ପରିଛିନ୍ନ ରୂପେ ପ୍ରାପ୍ତ ହୁଏ ଏବଂ ଯେ ଅକୃତ୍ରିମ, ଆନନ୍ଦ-ସ୍ୱରୂପ ଅନନ୍ତଦେବଙ୍କ ଉପାସନା କରନ୍ତି, ତାଙ୍କୁ ସେହି ପରମାତ୍ମା ରୂପୀ ଫଳ ପ୍ରାପ୍ତ ହୁଏ । ହେ ସାଧୁ ! ଅକୃତ୍ରିମ ଫଳ ତ୍ୟାଗ କରି ଯେ କୃତ୍ରିମକୁ ଆଶା କରନ୍ତି ସେ ଠିକ୍ ମନ୍ଦାର ବୃକ୍ଷର ବନକୁ ତ୍ୟାଗ କରି କଣ୍ଟାବୃକ୍ଷର ବନକୁ ପ୍ରାପ୍ତ ହୁଅନ୍ତି ।

ସେ ଦେବ କିପରି, ତାଙ୍କ ପୂଜା କ'ଣ ଏବଂ କିପରି କରାଯାଏ; ତାହା ଶୁଣ ।

ବୋଧ, ସାମ୍ୟ ଓ ଶମ – ହେଲା ତିନି ଫୁଲ ।

ପୂର୍ଣ୍ଣ (ସମ୍ୟକ୍) ଜ୍ଞାନର ନାମ 'ବୋଧ' ଅଟେ, ଅର୍ଥାତ୍ ଆତ୍ମତତ୍ତ୍ୱ ଯାହା ତାକୁ ସେହି ରୂପରେ ଜାଣିବା । ସର୍ବତ୍ର ପୂର୍ଣ୍ଣତାର ଦର୍ଶନ କରିବାର ନାମ 'ସାମ୍ୟ' । 'ଶମ'ର ଅର୍ଥ ଚିତ୍ତକୁ ନିବୃତ୍ତ କରିବା ଏବଂ ଆତ୍ମତତ୍ତ୍ୱ ଭିନ୍ନ ଅନ୍ୟ କିଛି ନ ଦେଖିବା । ଉକ୍ତ ତିନି ଫୁଲ ଦ୍ୱାରା ଚିନ୍ମାତ୍ର ଶୁଦ୍ଧ ଦେବ ଶିବଙ୍କର ପୂଜା ହୋଇଥାଏ । ଆକାର ଅର୍ଚ୍ଚନା ଦ୍ୱାରା ପ୍ରକୃତ ପୂଜା ହୋଇ ନ ଥାଏ ।

ଚିନ୍ମାତ୍ର ଆତ୍ମସଂବିତ୍‌କୁ ତ୍ୟାଗ କରି ଅନ୍ୟ ଜଡ଼ ବସ୍ତୁର ଯେ ଅର୍ଚ୍ଚନା କରେ, ସେ ଚିରକାଳ ପର୍ଯ୍ୟନ୍ତ କ୍ଳେଶ ଭୋଗ କରେ । ହେ ମୁନି ! ଯେ ଜ୍ଞାତ--ଜ୍ଞେୟ ପୁରୁଷ ଅଟନ୍ତି ସେ ଆତ୍ମ-ଧ୍ୟାନ ଭିନ୍ନ ପୂଜନ-ଅର୍ଚ୍ଚନକୁ ବାଳକ୍ରୀଡ଼ାର ମାନ୍ୟତା ଦିଅନ୍ତି । ଆତ୍ମା ଭଗବାନ ଏକ ଦେବ ଅଟନ୍ତି । ସେ ଶିବ ଓ ପରମ କଲ୍ୟାଣ ରୂପ ଅଟନ୍ତି । ସର୍ବଦା ଜ୍ଞାନ-ଅର୍ଚ୍ଚନା ଦ୍ୱାରା ତାଙ୍କର ପୂଜନ କର । ଏହା ବ୍ୟତୀତ ଅନ୍ୟ ସବୁ ପୂଜା ପୂଜାବାଚ୍ୟ ନୁହେଁ । ପୂଜ୍ୟ, ପୂଜକ ଓ ପୂଜା ଏହି ତ୍ରିପୁଟୀ ଦ୍ୱାରା ଆତ୍ମଦେବଙ୍କ ପୂଜା ହୁଏ ନାହିଁ ।

ଏହି ସମ୍ପୂର୍ଣ୍ଣ ବିଶ୍ୱ କେବଳ ପରମାତ୍ମାରୂପ ଅଟନ୍ତି । ପରମାତ୍ମାକାଶ ବ୍ରହ୍ମ ଏକମାତ୍ର ଦେବ ଅଟନ୍ତି । ତାଙ୍କ ପୂଜନ ସାର ଅଟେ ଏବଂ ତାଙ୍କ ଠାରୁ ସବୁ ଫଳ ପ୍ରାପ୍ତ ହୁଏ । ସେ ଦେବ ସର୍ବଜ୍ଞ ଅଟନ୍ତି ଓ ସମସ୍ତେ ତାଙ୍କ ଠାରେ ସ୍ଥିତ । ସେ ଅକୃତ୍ରିମ ଦେବ ଅଜ, ପରମାନନ୍ଦ ଓ ଅଖଣ୍ଡ ରୂପ ଅଟନ୍ତି । ତାଙ୍କୁ ଅବଶ୍ୟ ପାଇବା ଉଚିତ ଯଦ୍ୱାରା ପରମ ସୁଖ ଲାଭ ହୁଏ ।

ହେ ମୁନୀଶ୍ୱର ! ତୁମେ ଜାଗ୍ରତ ହୋଇଛ । ତେଣୁ ମୁଁ ତୁମକୁ ଏହି ପ୍ରକାର ଦେବ ଅର୍ଚ୍ଚନା ବିଷୟରେ କହିଲି । କିନ୍ତୁ ଯେ ଅସମ୍ୟକ୍‌ଦର୍ଶୀ ବାଳକ ଅଟନ୍ତି, ଯାହାର ନିଶ୍ଚୟାତ୍ମିକା ବୁଦ୍ଧି ହୋଇ ନାହିଁ, ତାଙ୍କ ପାଇଁ ଧୂପ ଦୀପ, ପୁଷ୍ପ, ଚନ୍ଦନ ଆଦିରେ ଅର୍ଚ୍ଚନା କରିବାକୁ କୁହାଯାଇଛି । ଆକାର କଳ୍ପନା କରାଯାଇ ଦେବଙ୍କର ମିଥ୍ୟା କଳ୍ପନା କରାଯାଇଛି । ନିଜ ସଂକଳ୍ପ ଦ୍ୱାରା ଯେଉଁ ଦେବ ଗଠିତ ହୁଅନ୍ତି ଏବଂ ତାଙ୍କୁ ପୁଷ୍ପ, ଧୂପ, ଦୀପାଦି ଦ୍ୱାରା ଯାହା ପୂଜା

କରାଯାଏ ସେ ସବୁ କେବଳ ଭାବନା ଅଟେ । ଏହା ଦ୍ୱାରା ତାଙ୍କର ସଙ୍କଳ୍ପ ରଚିତ ଫଳ ପ୍ରାପ୍ତି ହୁଏ । ଏହା ବାଳକ ବୁଦ୍ଧିର ଅର୍ଚ୍ଚନା ଅଟେ ।

ହେ ମୁନୀଶ୍ୱର ! ମୋ ମତରେ ଅନ୍ୟ କୌଣସି ଦେବ ନାହାନ୍ତି । ଏକ ପରମାତ୍ମା ଦେବ ହିଁ ତିନି ଭୁବନରେ ନିତ୍ୟ ବିଦ୍ୟମାନ । ସେହିଁ ଦେବ ଶିବ ଓ ସର୍ବ ପଦର ଅତୀତ ଅଟନ୍ତି । ସେ ସର୍ବ ସଙ୍କଳ୍ପରୁ ଅତୀତ ଅଟନ୍ତି ।

ଯେଉଁ ଚୈତନ୍ୟ ତତ୍ତ୍ୱ ଅରୁନ୍ଧତିଙ୍କ ଠାରେ ଏବଂ ଯେଉଁ ଚୈତନ୍ୟ ତତ୍ତ୍ୱ ତୁମ ପରି ନିଷ୍ପାପ ମୁନିଙ୍କ ଠାରେ ଏବଂ ପାର୍ବତୀଙ୍କ ଠାରେ ବିଦ୍ୟମାନ, ସେହି ଚୈତନ୍ୟତତ୍ତ୍ୱ ମୋ ଠାରେ ସ୍ଥିତ । ସେହି ଚୈତନ୍ୟତତ୍ତ୍ୱ ତ୍ରିଲୋକୀ ମାତ୍ରେ ବିଦ୍ୟମାନ । ସେ ହିଁ ଦେବ ଅଟନ୍ତି, ଅନ୍ୟ କୌଣସି ଦେବ ନାହାନ୍ତି । ହସ୍ତ-ପାଦ ଯୁକ୍ତ ଯେଉଁ ଦେବଙ୍କର କଳ୍ପନା କରାଯାଏ ସେ ଚିନ୍ମାତ୍ରସାର ନୁହନ୍ତି । ଚିନ୍ମାତ୍ର ହିଁ ସମସ୍ତ ଜଗତର ସାରଭୂତ ତତ୍ତ୍ୱ ଅଟନ୍ତି, ସେ ଅର୍ଚ୍ଚନା ଯୋଗ୍ୟ ଅଟନ୍ତି । ସେହି ଦେବ କାହା ଠାରୁ ଦୂରରେ ନାହାନ୍ତି କି ତାଙ୍କୁ ପ୍ରାପ୍ତ କରିବା କାହା ପକ୍ଷରେ କଠିନ ନୁହେଁ । ଯେ ସମସ୍ତଙ୍କ ଶରୀରରେ ବିଦ୍ୟମାନ ଏବଂ ସମସ୍ତଙ୍କର ଆତ୍ମା ଅଟନ୍ତି ସେ ଦୂର କିପରି ହେବେ ଏବଂ ତାଙ୍କୁ ଲାଭ କରିବା କଠିନ ହେବ କିପରି ? ସବୁ କର୍ମ ସେ କରୁଛନ୍ତି । ଭୋଜନ, ଭରଣ ଓ ପୋଷଣ ସେ ହିଁ କରୁଛନ୍ତି । ସେ ହିଁ ଶ୍ୱାସ ନେଉଛନ୍ତି । ସମସ୍ତଙ୍କ ଜ୍ଞାତା ମଧ୍ୟ ସେ ଅଟନ୍ତି । ମନ ସହିତ ଷଟ୍ଇନ୍ଦ୍ରିୟଙ୍କର ଚେଷ୍ଟା ଆତ୍ମାର ଆଶ୍ରୟରେ ହେଉଛି । ତାଙ୍କର ସଂଜ୍ଞା ବ୍ୟବହାର ନିମିତ୍ତ ତତ୍ତ୍ୱବେତ୍ତାଗଣ **'ଦେବ'** ରୂପରେ କଳ୍ପନା କରିଛନ୍ତି । ଏକଦେବ, ଚିନ୍ମାତ୍ର, ସୂକ୍ଷ୍ମ, ସର୍ବବ୍ୟାପୀ, ନିରଞ୍ଜନ, ଆତ୍ମା, ବ୍ରହ୍ମ ଇତ୍ୟାଦି ନାମ ଜ୍ଞାନବାନ ମହାତ୍ମାଗଣ ଉପଦେଶ ରୂପୀ ବ୍ୟବହାର ପାଇଁ ରଖିଛନ୍ତି । ସେହି ଆତ୍ମଦେବ ନିତ୍ୟ, ଶୁଦ୍ଧ ଓ ଅଦ୍ୱୈତରୂପ ଅଟନ୍ତି ଏବଂ ସମସ୍ତ ଜଗତରେ ଅନୁସ୍ୟୂତ ଅଟନ୍ତି । ସେହି ଚୈତନ୍ୟ ତତ୍ତ୍ୱ ଚତୁର୍ଭୁଜ ହୋଇ ଦୈତ୍ୟମାନଙ୍କୁ ନାଶ କରନ୍ତି, ସେହି ଚୈତନ୍ୟ ତତ୍ତ୍ୱେ ତ୍ରିନେତ୍ର, ମସ୍ତକ ଉପରେ ଚନ୍ଦ୍ରଙ୍କୁ ଧାରଣ କରିଛନ୍ତି । ବୃଷଭ ଉପରେ ଆରୂଢ଼ ହୋଇଛନ୍ତି, ପାର୍ବତୀ ରୂପୀ କମଳିନୀର ମୁଖର ଭ୍ରମର ରୂପେ ରୁଦ୍ର ନାମରେ ସ୍ଥିତ ହୋଇଛନ୍ତି । ସେହି ଚେତନା ବିଷ୍ଣୁ ରୂପ

ସତ୍ତ୍ୱା ଅଟନ୍ତି ଯାହାଙ୍କ ନାଭି କମଳରୁ ବ୍ରହ୍ମା ଉତ୍ପନ୍ନ ହୋଇଛନ୍ତି । ସେହି ଚୈତନ୍ୟ ମସ୍ତକରେ ଚୂଡ଼ାମଣି ଧାରଣ କରି ତ୍ରିଲୋକପତି ରୁଦ୍ର ରୂପରେ ବିଦ୍ୟମାନ । ଦେବତା ରୂପ ଧାରଣ କରି ସେ ହିଁ ସ୍ଥିତ ଅଟନ୍ତି ଏବଂ ଦୈତ୍ୟ ରୂପ ଧାରଣ କରି ସେ ହିଁ ପ୍ରକଟିତ ହୋଇଛନ୍ତି ।

ହେ ମୁନୀଶ୍ୱର ! ସେହି ଚୈତନ୍ୟ ଶିବରୂପ ହୋଇ ଉପଦେଶ ଦେଉଛନ୍ତି ଏବଂ ସେହି ଚୈତନ୍ୟ ବଶିଷ୍ଠ ହୋଇ ଶ୍ରବଣ କରୁଛନ୍ତି । ସେହି ପରମ ଚୈତନ୍ୟଦେବଙ୍କୁ ଜାଣିବା ହିଁ ପ୍ରକୃତ ଅର୍ଚ୍ଚନା ଅଟେ ।

(ଶ୍ରୀ ଯୋଗବାଶିଷ୍ଠ ମହାରାମାୟଣ)

## ଅଦ୍ୱୈତ ନିଷ୍ଠା

ଥରେ ରାମକୃଷ୍ଣ ପରମହଂସ ଗୋଟିଏ ବଟବୃକ୍ଷ ମୂଳେ ପରମାତ୍ମାଙ୍କ ଅଦ୍ୱୈତ ନିଷ୍ଠାରେ ଆତ୍ମ ବିଭୋର ହୋଇ ବସିଥାନ୍ତି । ଠିକ୍ ଏହି ସମୟରେ ଜଣେ ମୁସଲମାନ ସେଠାରେ ଆସି ପହଞ୍ଚିଲା । ମୁହଁରେ ତା'ର ଧଳା ଦାଢ଼ି । ହାତରେ ଏକ ମାଟି ହାଣ୍ଡି... ସେଥିରେ ରହିଛି ରନ୍ଧା ହୋଇଥିବା ଭାତ । ସାମାନ୍ୟ ଦୂରରେ ବସିଥିବା କେତେକ ମୁସଲମାନଙ୍କୁ ସେ ଭୋଜନ କରାଇ ବର୍ତ୍ତମାନ ରାମକୃଷ୍ଣଦେବଙ୍କ ପାଖକୁ ଆସିଲା ଏବଂ ତାଙ୍କୁ ସେହି ଭାତ ଖୁଆଇ ଚାଲିଗଲା ।

ରାମକୃଷ୍ଣ ତ ନିଜ ସର୍ବବ୍ୟାପକ ଆତ୍ମ-ଚୈତନ୍ୟ ବୋଧରେ ତଲ୍ଲୀନ । ବୃତ୍ତି ଯେତେବେଳେ ବ୍ରହ୍ମାକାର ହୋଇଯାଏ, ସୂକ୍ଷ୍ମତାର ଚରମ ସୀମା ପ୍ରାପ୍ତ ହୋଇଥାଏ, ସେତେବେଳେ 'ମୁଁ-ତୁ... ମୋର-ତୋର...' ହିନ୍ଦୁ ମୁସଲମାନ... ଆଦି ଭେଦଭାବ ଲୋପ ହୋଇଯାଏ, 'ସର୍ବତ୍ର ମୁଁ ହିଁ ଆତ୍ମଚୈତନ୍ୟ ରୂପରେ ରମଣ କରୁଛି'– ଏହି ବାସ୍ତବିକତାର ରହସ୍ୟ ପ୍ରକଟିତ ହୁଏ । ସମ୍ପୂର୍ଣ୍ଣ ଜଗତ ବ୍ରହ୍ମମୟ ହୋଇଯାଏ । ଏହିପରି ଏକ ଦିବ୍ୟ ଭାବରେ ବିଭୋର ରାମକୃଷ୍ଣଦେବ ମୁସଲମାନର ହାଣ୍ଡିରୁ ଅନ୍ନ ସେବନ କଲେ କିନ୍ତୁ ଯେତେବେଳେ ବୃତ୍ତି ସ୍ଥୂଳତ୍ୱ ଲାଭ କଲା, ଚିତ୍ତରେ ଭେଦବୁଦ୍ଧିର ପୁରୁଣା ସଂସ୍କାର ମୁଣ୍ଡ ଟେକିଲା । ତାଙ୍କ ଚିତ୍ତରେ ଶଙ୍କା ଆସିଲା :

''ହାୟ... ହାୟ ! ମୁଁ ଯବନ ହସ୍ତରୁ ଖାଦ୍ୟ ଗ୍ରହଣ କଲି ? ମୁଁ ଠିକ୍ କାମ କଲି ନାହିଁ । ରାମକୃଷ୍ଣ ସେଠାରୁ ଉଠି ଭବାନୀ କାଳୀଙ୍କ ମନ୍ଦିରକୁ ଆସିଲେ ଏବଂ ମାଁଙ୍କ ଚରଣରେ ଲୋଟି ଯାଇ ପଶ୍ଚାତାପର ଅଶ୍ରୁ ବୁହାଇବାକୁ ଲାଗିଲେ ଏବଂ ପ୍ରାର୍ଥନା କଲେ : ''ମାଁ ! ମୋତେ କ୍ଷମା କର ! ଆଜି ମୁଁ ଅଭକ୍ଷ୍ୟ ଭକ୍ଷଣ କରିଛି । ଯବନର ଗୃହରେ ରୋଷେଇ ହୋଇଥିବା ଅନ୍ନକୁ ଭକ୍ଷଣ କରିଛି । ମୋର ବଡ଼ ଅପରାଧ ହୋଇଛି । ମାଁ ! ମୋର ଦୋଷ କ୍ଷମା କରିଦେ !''

କରୁଣାମୟୀ ଜଗଦମ୍ବା ପ୍ରକଟ ହୋଇ କହିଲେ : ପୁତ୍ର ! ତୋର ଭେଦ ବୁଦ୍ଧି ତୋତେ ପଥଚ୍ୟୁତ କରିଛି । ଏକ ସଚ୍ଚିଦାନନ୍ଦ ପରଂବ୍ରହ୍ମ ହିଁ ସର୍ବ ରୂପରେ ରମଣ କରୁଛନ୍ତି । ଜୀବ ରୂପରେ ସେ, ଜଗତ ରୂପରେ ମଧ୍ୟ ସେ ପ୍ରତୀୟମାନ । ମୁଁ ବି ସେ ଏବଂ ତୁ ବି ସେ । ସେ ଧଳା ଦାଢ଼ିବାଲା ମୁସଲମାନ ତ ଦେବଦୂତ ମହମ୍ମଦ ଥିଲେ । ସେ ମଧ୍ୟ ସେହି ପରଂବ୍ରହ୍ମ ଅଟନ୍ତି । ମୁଁ ଏବଂ ତାଙ୍କ ମଧ୍ୟରେ କୌଣସି ଭେଦ ନାହିଁ । ଏକ ଚୈତନ୍ୟ ଦେବ ସଚ୍ଚିଦାନନ୍ଦ ପରମାତ୍ମା ବିଭିନ୍ନ ରୂପରେ ବିଳାସ କରୁଛନ୍ତି ।

ଆଧ୍ୟାତ୍ମିକ ଉତ୍‌ଥାନ ଚାହୁଁଥିବା ସାଧକର ଅନ୍ତଃକରଣରେ ଅଦ୍ୱୈତ ଭାବର ଅଖଣ୍ଡଧାରା ପ୍ରବାହିତ ହେବା ଉଚିତ । ଅନ୍ତଃକରଣର ଅବିଶୁଦ୍ଧ ଅବସ୍ଥାରେ ଦ୍ୱୈତ ପ୍ରତୀତ ହୁଏ । ଅନ୍ତଃକରଣର ଉଚ୍ଚ ଦଶାରେ ଅଦ୍ୱୈତ ଭାବ ହିଁ ବଜାୟ ରହେ ।

## ଆତ୍ମକଲ୍ୟାଣ ଉଦ୍ଦେଶ୍ୟରେ

ପ୍ରତିଦିନ ନିୟମ ପୂର୍ବକ ଏକାନ୍ତରେ ବସି ମନର ସମ୍ପୂର୍ଣ୍ଣ ସଂସାରକୁ ଭୁଲି ଯାଅ । ଏହି ପ୍ରକାରେ ସଂସାରକୁ ଭୁଲିଯିବା ଦ୍ୱାରା କେବଳ ଏକ ଚୈତନ୍ୟ ଆତ୍ମା ଶେଷରେ ରହିଯାଏ । ସେହି ଚୈତନ୍ୟ ସ୍ୱରୂପକୁ ଧ୍ୟାନ କର । ଧ୍ୟାନ କଲେ ସମାଧି ସିଦ୍ଧ ହେବ ଏବଂ ମୁକ୍ତି ଲାଭ କରିବ ।

ଯେଉଁ ବ୍ୟକ୍ତି ଉକ୍ତ ନିୟମକୁ ପାଳନ କରେ ତାର ବାସନା ଶୁଦ୍ଧ ହୁଏ । ଅସତ୍ କର୍ମ ବନ୍ଦ ହେବାକୁ ଲାଗେ । ଧର୍ମ ଦ୍ୱାରା ବାସନା ଶୁଦ୍ଧ ହୁଏ । ଉପାସନା ଦ୍ୱାରା ବାସନା ନିୟନ୍ତ୍ରିତ ହୁଏ ଏବଂ ଜ୍ଞାନ ଦ୍ୱାରା ବାସନା ଖଣ୍ଡିତ ହୁଏ ।

ଇଷ୍ଟ ସୁଦୃଢ଼ ହେଲେ ଆମର ଅନିଷ୍ଟ ହେବ ନାହିଁ । ଆତ୍ମଭାବ ସୁଦୃଢ଼ ଅଛି, **'ସୁଦର୍ଶନ'** ଠିକ୍ ଅଛି ତ **'କୁଦର୍ଶନ'** ଆମ ଉପରେ କୌଣସି ପ୍ରଭାବ ପକାଇ ପାରିବ ନାହିଁ । ଆତ୍ମନିଷ୍ଠା ବଳବାନ ହେଲେ କୌଣସି ଦେହଧାରୀ ଆମକୁ କୌଣସି ଦୁଃଖ ଦେଇ ପାରିବ ନାହିଁ ।

ଆନନ୍ଦ ପରମାତ୍ମାଙ୍କ ସ୍ୱରୂପ ଅଟେ । ଚତୁର୍ଦ୍ଦିଗରେ, ବାହାରେ ଏବଂ ଭିତରେ ଆନନ୍ଦ ହିଁ ଆନନ୍ଦ ପୂରି ରହିଛି । ଆନନ୍ଦ ସମ୍ପୂର୍ଣ୍ଣ ସଂସାରରେ ପରିବ୍ୟାପ୍ତ । ଯଦି ଏହି ପରି ଦେଖା ନ ଯାଉଛି, ବାଣୀରେ କେବଳ କହିଚାଲ ଏବଂ ମନରେ ମାନ୍ୟତା ଦେଇଚାଲ । ଜଳରେ ଅବଗାହନ ବା ନିମଗ୍ନ ହେଲା ପରି ଆନନ୍ଦରେ ବୁଡ଼ି ରହ ଓ ଓତଃପ୍ରୋତ ଭାବେ ନିଜକୁ ଜଡ଼ିତ କର । ରାତିଦିନ ଆନନ୍ଦରେ ମଗ୍ନ ରହ । କାହାର ମୃତ୍ୟୁ ହୋଇଯାଉ, ଘରେ ନିଆଁ ଲାଗିଯାଉ କିମ୍ବା ଆଉ କିଛି ଅନିଷ୍ଟ ଘଟିଯାଉ, ତଥାପି ଆନନ୍ଦ ହିଁ ଆନନ୍ଦ... କେବଳ ଆନନ୍ଦ ହିଁ ଆନନ୍ଦ ।

ଏହି ପ୍ରକାର ଅଭ୍ୟାସ କଲେ ସମ୍ପୂର୍ଣ୍ଣ ଦୁଃଖ ଏବଂ କ୍ଳେଶ ନଷ୍ଟ ହୋଇଯାଏ । ବାଣୀର ଯଦି ଉଚ୍ଚାରଣ କର ତାହା ଆନନ୍ଦର, ମନରେ ଯଦି କିଛି ମନନ କର ତାହା ଆନନ୍ଦର ଏବଂ ବୁଦ୍ଧିରେ ଯାହା ବିଚାର କର ତହିଁ ମଧ୍ୟ କେବଳ ଆନନ୍ଦର ସ୍ଫୁରଣ ହୁଏ । ଯଦି ଏପରି ପ୍ରତୀତି ନ ହୁଏ ତେବେ କଳ୍ପିତ ରୂପରେ ମଧ୍ୟ ଆନନ୍ଦକୁ ଅନୁଭବ କର । ଏହାର ଫଳ ମଧ୍ୟ ଅତ୍ୟନ୍ତ ଲାଭଦାୟକ ହେବ । ଏପରି କରୁକରୁ ଭବିଷ୍ୟତରେ ଆନନ୍ଦ ପ୍ରାପ୍ତ ହେବ ।

ଏହି ସାଧନାକୁ ସମସ୍ତେ କରି ପାରିବେ । ଆମକୁ ନିଶ୍ଚୟ କରି ାକୁ ହେବ ଯେ ଆମେ ସମସ୍ତେ ଏକ ମାତ୍ର ଆନନ୍ଦ ସ୍ୱରୂପ ଅଟୁ । ଏପରି ନିଶ୍ଚୟ ରି ନେଲେ ଆନନ୍ଦ ହିଁ ଆନନ୍ଦ ହୋଇଯିବ ।

ଭଗବାନଙ୍କ ମୂର୍ତ୍ତି ବା ଚିତ୍ରକୁ ସାମନାରେ ରଖ । ଆଖିକୁ ଖୋଲି ତାଙ୍କ ନେତ୍ର ସହିତ ନିଜ ନେତ୍ରକୁ ମିଳାଅ । ତ୍ରାଟକ ପରି ଏକ ଲୟରେ ଧ୍ୟାନ କର । ଧ୍ୟାନ ସମୟରେ ଏହି ବିଶ୍ୱାସ ରଖ କି ପ୍ରେମ ସ୍ୱରୂପ, ଆନନ୍ଦ ସ୍ୱରୂପ ଭଗବାନ ଅବଶ୍ୟ ପ୍ରକଟିତ ହେବେ । ଏହା ମଧ୍ୟ ଭଗବଦ୍ ପ୍ରାପ୍ତିର ସୁଗମ ଉପାୟ ଅଟେ ।

ଧ୍ୟାନ କରିବା ସମୟରେ ଯଦି ସ୍ଥିର ନ ହୋଇ ଇତସ୍ତତଃ ହେଲା ଧ୍ୟାନକୁ ବନ୍ଦ କରି ମନକୁ କହ : 'ଠିକ୍ ଅଛି, ବାପା ! ତୁ ଯାଅ । ଯେଉଁ ଆଡ଼େ ଯିବାକୁ ତୋର ଇଚ୍ଛା ସେଠାକୁ ଯାଅ । ଭଗବାନ ହିଁ ସବୁ ରୂପ ଧାରଣ କରି ରହିଛନ୍ତି । ଯେଉଁ ସବୁ ବସ୍ତୁ ଦେଖାଯାଉଛି ଯେ ସବୁ ପରମାତ୍ମାଙ୍କ ରୂପ ଅଟେ । ତୁ ଭଗବାନଙ୍କ ବ୍ୟତୀତ ଆଉ ଦେଖିବୁ କଣ ? ସାରା ସଂସାରରେ ସମସ୍ତଙ୍କୁ ଭଗବାନଙ୍କ ରୂପ ଜାଣି ମନକୁ ମନ ଭଗବଦ୍ ବୁଦ୍ଧିରେ ସମସ୍ତଙ୍କୁ ପ୍ରଣାମ କର । ଏକ ପରମାତ୍ମା ହିଁ ଅନନ୍ତ ରୂପ ଧାରଣ କରିଛନ୍ତି । ବାରମ୍ବାର ଏପରି ଭାବନା ଦୃଢ଼ କରିବା ଦ୍ୱାରା ଭଗବଦ୍-ଦର୍ଶନ ସୁଲଭ ହୋଇଯାଏ ।

ଯଦି ଆପଣ ନିଜର ପରମ ଲକ୍ଷ୍ୟକୁ ପ୍ରାପ୍ତ କରିବାକୁ ଦୃଢ଼ ସଂକଳ୍ପ ତେବେ ପ୍ରଗତି ଅବଶ୍ୟ ହେବ । ବିନୟ ଭାବ ଦ୍ୱାରା ସଦ୍‌ଗୁଣର ବିକାଶ ହେବ । ଅନ୍ୟର ସେବା କରିବା ଦ୍ୱାରା ପ୍ରକୃତ ନିଃସ୍ୱାର୍ଥ ଭାବ ବଳରେ ହୃଦୟ ଅବଶ୍ୟ ଶୁଦ୍ଧ ହେବ । ଦୃଢ଼ ବିଶ୍ୱାସ ଅଛି ତ ଆତ୍ମ-ସାକ୍ଷାତ୍‌କାର ଅବଶ୍ୟ ହେବ । ଯଦି ପ୍ରକୃତ ବୈରାଗ୍ୟ ଅଛି ତେବେ ଜ୍ଞାନ ନିଃସନ୍ଦେହରେ ହେବ । ଯଦି ଅତୁଟ ଧୈର୍ଯ୍ୟ ରହିଛି ତେବେ ଶାନ୍ତି ଅବଶ୍ୟ ଲାଭ ହେବ । ଯଦି ସତତ ପ୍ରଯତ୍ନ କର ତେବେ ବିଘ୍ନ-ବାଧା ସବୁ ଅବଶ୍ୟ ନଷ୍ଟ ହେବ । ଯଦି ସମର୍ପଣ ଯଥାର୍ଥ ହୋଇଥାଏ ଭକ୍ତି ଅବଶ୍ୟ ପ୍ରକଟିତ ହେବ । ଯଦି ପୂର୍ଣ୍ଣ ନିର୍ଭରତା ରହିଛି ତେବେ ନିରନ୍ତର କୃପାର ଅନୁଭବ ଅବଶ୍ୟ ହେବ । ଯଦି ଦୃଢ଼ ପରମାତ୍ମା-ଚିନ୍ତନ ଚାଲିଛି ତେବେ ସଂସାର ଚିନ୍ତନର ଅବସାନ ହେବ । ଯଦି ସଦ୍‌ଗୁରୁଙ୍କ ଦୃଢ଼ ଆଶ୍ରୟ ରହିଛି ତେବେ ବୋଧ ଅବଶ୍ୟ ହେବ । ଯେଉଁଠାରେ ସତ୍ୟର ବୋଧ ହୁଏ ସେଠାରେ ସମତା ଅବଶ୍ୟ ଦୃଢ଼ ହେବ । ଯେଉଁଠାରେ ପୂର୍ଣ୍ଣ ପ୍ରେମ ବିକଶିତ ହେବ ସେଠାରେ ପୂର୍ଣ୍ଣାନନ୍ଦର ସ୍ଥିତି ଅତି ସୁଲଭ ହେବ ।

ଦୃଢ଼ ଭାବନା କରନ୍ତୁ କି : ସଂସାରର କୌଣସି ବିଷମତା ମୋତେ ବିବ୍ରତ କରିପାରିବ ନାହିଁ । ମୋ ହୃଦୟରେ ଈଶ୍ୱରୀୟ ପ୍ରେମର ସଞ୍ଚାର ହେଉଛି । ମୋର ଚିତ୍ତ, ମୋର ସ୍ୱଭାବ ଶାନ୍ତ ଏବଂ ନିର୍ଦ୍ଦୋଷ ହୋଇଯାଇଛି । ସମ୍ପୂର୍ଣ୍ଣ ଅଶାନ୍ତି, ଉଦ୍‌ବେଗ, ମନୋବିକାର ଏବଂ କୁଭାବ ମୋର ଚିତ୍ତପଟରୁ ବିଦୂରିତ ହେଲାଣି ।

ମୋର ସ୍ୱଭାବ ବିଲ୍‌କୁଲ୍ ବଦଳି ଗଲାଣି । ସଂସାରର ପ୍ରଲୋଭନ ମୋତେ ବନ୍ଧନରେ ପକାଇ ପାରିବ ନାହିଁ । ମୋର ପବିତ୍ର ଏବଂ ଶୁଦ୍ଧ ଅନ୍ତଃକରଣରେ କୌଣସି କ୍ଷୋଭ ଏବଂ ଅଶାନ୍ତିର ତରଙ୍ଗ ଉତ୍ପନ୍ନ ହେବ ।

⁂

# ଚିନ୍ତନିକା

⁂ ଗୁଣାତୀତ ହେବା ପାଇଁ ଗୁଣାତୀତ ମହାପୁରୁଷଙ୍କର କୃପା ଲାଭ କରିବା ଅତ୍ୟନ୍ତ ଆବଶ୍ୟକ ଅଟେ । ଏହି ସୌଭାଗ୍ୟ ଲାଭ କରିବା ପର୍ଯ୍ୟନ୍ତ ତ୍ୟାଗ ଏବଂ ବୈରାଗ୍ୟକୁ ବୃଦ୍ଧି କରିବାରେ ଲାଗ । ମୁକ୍ତି ପାଇଁ ଏହା ଅନିବାର୍ଯ୍ୟ ସର୍ତ୍ତ ଅଟେ ।

⁂ ଶାଶ୍ୱତ ଚୈତନ୍ୟଦେବଙ୍କୁ ପ୍ରେମ କରିବା ଦ୍ୱାରା ନଶ୍ୱର ବସ୍ତୁ ଆପଣା ଛାଏଁ ତୁମ ପଛରେ ଆସିବ । କଦାଚିତ୍ ନ ଆସିଲେ ବି ଆପଣଙ୍କୁ ଆତ୍ମଶାନ୍ତି ତ ଅବଶ୍ୟ ମିଳିବ ଏବଂ ସେହି ଆତ୍ମଶାନ୍ତି ସମ୍ମୁଖରେ ବିଶ୍ୱର ଯେ କୌଣସି ବୈଭବ ମୂଲ୍ୟହୀନ ହୋଇଯିବ ।

⁂ ଲୋକଙ୍କୁ ଖୁସି କରିବା ଧନ୍ଦାରେ କେବେ ପଡ଼ ନାହିଁ । ସମସ୍ତ ଲୋକ ତୁମ ଉପରେ ଖୁସି ହେବେ ଏହା ସମ୍ଭବପର ନୁହେଁ । ତୁମେ ନିଜ ହୃଦୟରେ ଈଶ୍ୱରଙ୍କୁ ସ୍ଥାନ ଦିଅ । ହୃଦୟକୁ ଜଳିବାକୁ ଦିଅ ନାହିଁ, ଦୁଃଖୀ ହେବାକୁ ଦିଅ ନାହିଁ । ସଦା ପ୍ରସନ୍ନ ରହ । ଈଶ୍ୱରଙ୍କ ବ୍ୟତୀତ ଆଉ ଯାହା କିଛି ଅଛି ସେ ସବୁ ଜଳି ଧ୍ୱଂସ ହୋଇଗଲେ ବି କିଛି ଯାଏ ଆସେ ନାହିଁ । ଈଶ୍ୱରଙ୍କ ସହିତ ତନ୍ମୟତା ହୋଇଗଲା ଅର୍ଥ ଆତ୍ମଶାନ୍ତି ହାତ-ମୁଠାକୁ ଆସିଗଲା । ଆତ୍ମଶାନ୍ତି ବ୍ୟତୀତ ମାନବ ଜୀବନର ଆଉ କି ଉଦ୍ଦେଶ୍ୟ ଥାଇପାରେ । ଆତ୍ମଶାନ୍ତି ପ୍ରାପ୍ତ କରିବା ହିଁ ପରମ ପୁରୁଷାର୍ଥ ଅଟେ ।

⁂. ଦୈବୀ ବିଧାନର ବିପରୀତ ଦିଗରେ ଚାଲିଲେ ଆପତ୍ତି ଆସେ । ଈଶ୍ୱରଙ୍କ ବ୍ୟତୀତ କୌଣସି କଥାରେ ସତ୍ୟବୁଦ୍ଧି ରଖିବା ଦ୍ୱାରା ଏହା ଘଟେ ।

⁂ ପରମାତ୍ମାଙ୍କୁ ସର୍ବଦା ପ୍ରାର୍ଥନା କର କି : '' ହେ ପ୍ରିୟ ପ୍ରଭୁ ! ଆମ ମନ ହୃଦୟରେ ଆପଣଙ୍କ ବ୍ୟତୀତ ଅନ୍ୟ କିଛି ସ୍ଥାନ ନ ପାଉ । ଆମେ ସଂସାରରେ ନିଜକୁ ହଜାଇ

ନ ଦେଉ । ସଂସାର ପ୍ରତି ଆମର ହୃଦୟରେ ମୋହ ଯଦି ଆସେ ହେ ପ୍ରଭୁ ! ଆମର ଏହି ବୁଦ୍ଧିକୁ ଧ୍ୱଂସ କରି ଦିଅନ୍ତୁ । ହେ ପ୍ରିୟତମ ! ଆପଣଙ୍କ ବ୍ୟତୀତ ଆମ ମନରେ ଯଦି ଅନ୍ୟ କିଛି ବିଚାର ଉଠେ ଆମ ଶିରା-ପ୍ରଶିରାର ରକ୍ତ ଶୁଖିଯାଉ । ସ୍ୱର୍ଗ-ପ୍ରାପ୍ତି ନିମନ୍ତେ ଯଦି ଆପଣଙ୍କୁ ଭଜନ କରୁ ତେବେ ଆମକୁ କୁମ୍ଭୀପାକ ନର୍କରେ ନିକ୍ଷେପ କରନ୍ତୁ । ସ୍ୱାସ୍ଥ୍ୟ ଏବଂ ସୌନ୍ଦର୍ଯ୍ୟ ପାଇଁ ଯଦି ଉପାସନା କରୁ ତେବେ ରୋମ ରୋମରେ କୀଟ ପଡୁ । ଆମକୁ ଯେପରି ରଖନ୍ତୁ ନା କାହିଁକି, ହେ ପ୍ରଭୋ ! ଆମ ଭକ୍ତିର ସୁରକ୍ଷା କରିବେ ! ଯାହା ବଳରେ ଆମେ ଆପଣଙ୍କ ପାଦ ପଦ୍ମକୁ ସର୍ବଦା ସ୍ମରଣ କରୁଥିବୁ ।''

❋ ସଂସାରର ନଶ୍ୱରତା ଦେଖି ଏବଂ ସଂସାରୀ ବ୍ୟକ୍ତିମାନଙ୍କ ଅବିବେକତା ଦେଖି ଶାଶ୍ୱତ ଚୈତନ୍ୟଦେବ ପରମାତ୍ମାଙ୍କ ଠାରେ ନିଜକୁ ଯେ ଉତ୍ସର୍ଗ ନ କରେ ସେ ମୂର୍ଖ ଅଟେ ।

❋ ନିଜ ଜୀବନକୁ ଏପରି ଢଙ୍ଗରେ ନିୟନ୍ତ୍ରଣ କର ଯେପରି କି କୌଣସି ଆବଶ୍ୟକତା ପାଇଁ କାହା ପଛରେ ଗୋଡ଼ାଇବାକୁ ପଡ଼ିବ ନାହିଁ । ଲୋକମାନେ ଆପଣାଛାଏଁ ତୁମ ପଛରେ ଚାଲିବେ । ତୁମକୁ ନଶ୍ୱର ପଛରେ ଦୌଡ଼ିବାକୁ ପଡ଼ିବ ନାହିଁ । କାରଣ ତୁମେ ସଚ୍ଚିଦାନନ୍ଦ ସ୍ୱରୂପ ଅଟ । ବାସ୍ ! ସେହି ଶାଶ୍ୱତ ସ୍ୱରୂପକୁ ଚିହ୍ନ । ତେବେ ଯାଇ ଜୀବନର ସମସ୍ତ କର୍ତ୍ତବ୍ୟ ପୂରଣ ହେବ ।

❋ ବାଳକ ଯେମିତି ଯେମିତି ବଡ଼ ହେବାକୁ ଲାଗେ ଜନନୀଙ୍କ ପ୍ରତି ତାର ଅନନ୍ୟତା ହ୍ରାସ ହେବା ଦେଖାଯାଏ, ନିଜ ବାତ୍ସଲ୍ୟମୟୀ ମା'ଙ୍କ ଠାରୁ ଦୂରେଇ ଯାଏ । ପରନ୍ତୁ ଭକ୍ତି ମାର୍ଗରେ ଅଗ୍ରଗତି କରୁଥିବା ଭକ୍ତ ଈଶ୍ୱରଙ୍କ ପ୍ରତି ଅନନ୍ୟତା ବୃଦ୍ଧି ପାଉଥିବା ହେତୁ ଦିନ ପ୍ରତିଦିନ ଅଧିକାଧିକ ଈଶ୍ୱରଙ୍କର ନିକଟବର୍ତ୍ତୀ ହେବାକୁ ଲାଗେ ।

❋ ଭାଗ୍ୟବାନ ଜୀବମାନଙ୍କର ସନ୍ଥ-ମହାତ୍ମା ତଥା ଈଶ୍ୱରଙ୍କ ପ୍ରତି ଶୀଘ୍ର ଶ୍ରଦ୍ଧା ଜାତ ହୁଏ କିନ୍ତୁ ଦୁଷ୍ଟ ଏବଂ ମୂଢ଼ ବ୍ୟକ୍ତିର ଜୀବନର କୌଣସି କୋଣରେ ପଡ଼ିଥିବା ଅତି ସାମାନ୍ୟ ପୁଣ୍ୟ ହେତୁ ଡେ଼ରିରେ ବି ଯଦି ଶ୍ରଦ୍ଧା ଜାତ ହୁଏ ତେବେ ତାର ଭାଗ୍ୟ ଉଦୟ ହେଲା ବୋଲି ଜାଣିବାକୁ ହେବ । ଅନ୍ୟଥା ଏପରି ଲୋକ ମୃତ୍ୟୁ

ପର୍ଯ୍ୟନ୍ତ ସନ୍ଥ-ମହାପୁରୁଷଙ୍କ ମାର୍ଗରେ କଣ୍ଟା ଏବଂ କାଦୁଅ ଛାଟିବା ତାଙ୍କର ନିତ୍ୟନୈମିତ୍ତିକ କର୍ମ ହୋଇଥାଏ ।

꙳ ପରମ ପୁରୁଷାର୍ଥ ମାର୍ଗରେ ମାଡ଼ି ଚାଲ । ଅତୀତ କର୍ମ ପାଇଁ ପଶ୍ଚାତାପ ଏବଂ ଭବିଷ୍ୟତ ଚିନ୍ତା ତ୍ୟାଗ କରି ଆଗକୁ ପାଦ ବଢ଼ାଅ । ପରମାତ୍ମାଙ୍କ ପ୍ରତି ଅନନ୍ୟ ଭାବ ରଖ । ଦେଖିବ ଏହି ଘୋର କଳି ଯୁଗରେ ମଧ୍ୟ ତୁମ ପାଇଁ ଅନ୍ନ, ବସ୍ତ୍ର ଏବଂ ନିବାସର ବ୍ୟବସ୍ଥା ସୁରକ୍ଷିତ ହୋଇ ରହିଛି ।

꙳ ଜୀବନର ବୋଝକୁ ଫୋପାଡ଼ି ଫୁଲ ପରି ହାଲୁକା ଏବଂ ନିର୍ଦ୍ଦୋଷ କରି ଗଢ଼ିବା ପାଇଁ କୌଣସି ନା କୌଣସି ଠାରେ ଅନନ୍ୟ ଭାବ ରଖିବାକୁ ହେବ । ବହୁ ସଂଖ୍ୟକ ଲୋକ କୌଣସି ନା କୌଣସି ଦେବ-ଦେବୀଙ୍କ ଠାରେ ଅନନ୍ୟ ଭାବ ରଖିଥିବା ବେଳେ ବେଦାନ୍ତର ସତ୍‌ସଙ୍ଗ-ଅମୃତ ପାନ କରୁଥିବା ସାଧକ ସଚ୍ଚିଦାନନ୍ଦ ପରମାତ୍ମାଙ୍କ ଠାରେ ଅନନ୍ୟ ଭାବ ରଖିଥାଏ ।

꙳ ଯେଉଁ ସାଧନାରେ ତୁମର ଆଗ୍ରହ ହେବ ସେହି ସାଧନାରେ ଈଶ୍ୱର ମଧୁରତା ଭରି ଦେବେ । ତୁମର ଭାବନା, ତୁମର ନିଷ୍ଠା ସୁଦୃଢ଼ ହେବା ମହତ୍ତ୍ୱପୂର୍ଣ୍ଣ ଅଟେ । ତୁମର ପରମ ଇଷ୍ଟଦେବ ତୁମ ପ୍ରତି ଯଦି ସନ୍ତୁଷ୍ଟ ଅଛନ୍ତି ଅନ୍ୟ ଅନିଷ୍ଟ ତୁମର କୁଛି ବିଗାଡ଼ି ପାରିବ ନାହିଁ, ପରମ ଇଷ୍ଟଦେବ ହେଉଛନ୍ତି ତୁମର ଆତ୍ମା, ତୁମର ନିଜ ସ୍ୱରୂପ । ଯଦି ପରମାତ୍ମାଙ୍କ ଠାରେ ତୁମର ଅନନ୍ୟ ଭକ୍ତି ହୋଇଯାଏ, ତୁମକୁ ପରମାତ୍ମା କିଛି ଦେବେ ନାହିଁ । ସେ ତୁମକୁ ନିଜ ଠାରେ ଏକାକାର କରିଦେବେ । ବର୍ତ୍ତମାନ କହ, ତୁମକୁ ଆଉ କିଛି ଦେବା ବାକି ରହିଲା କି ?

꙳ ମଧୁର ଭକ୍ତିର ଆଲିଙ୍ଗନ ଏତେ ମଧୁର ତା' ସମକ୍ଷରେ ବ୍ରହ୍ମଲୋକର ଐଶ୍ୱର୍ଯ୍ୟ କାକବିଷ୍ଠା ସଦୃଶ ତୁଚ୍ଛ ଅଟେ ।

꙳ ଈଶ୍ୱର ଅତିରିକ୍ତ ଅନ୍ୟ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟ ବ୍ୟର୍ଥ ଏବଂ ଦୁଃଖରୂପ ଅଟେ । ସାମାନ୍ୟ ସାବଧାନତାର ସହିତ ଚିନ୍ତାକଲେ ଏହି କଥା ବେଶ୍ ବୁଝିହେବ ଏବଂ ତୁମେ ଈଶ୍ୱରଙ୍କ ମାର୍ଗରେ ଅଗ୍ରସର ହୋଇ ପାରିବ ।

꙳ ଲୌକିକ ସରକାର ଯେତେବେଳେ ନିଜ ସରକାରୀ କର୍ମଚାରୀଙ୍କ ଦାୟିତ୍ୱ

ବହନ କରୁଛି, ଉର୍ଦ୍ଧ୍ୱଲୋକର ଦିବ୍ୟ ସରକାର, ପରମ ପାଳକ ପରମାତ୍ମା ଆଧ୍ୟାତ୍ମମାର୍ଗର ପଥିକର ବୋଝ ବହନ ନ କରି ରହିବେ ବା କିପରି ?

❋ ପରମେଶ୍ୱରଙ୍କ ଶେଷ ନିୟମ ଅତ୍ୟନ୍ତ କଠୋର ଅଟେ । ଶେଷରେ ତୁମର ମୋହ ଉପରେ ସେ ଘୋର ପ୍ରହାର କରିବେ । ତେଣୁ ବର୍ତ୍ତମାନ ଠାରୁ ସାବଧାନ ହୋଇଯାଅ । କୂଟ-କପଟ, ଛଳ ପ୍ରପଞ୍ଚକୁ ଭିତରୁ ଛାଡ଼ିବାକୁ ପ୍ରୟାସ କର । ଆସକ୍ତିର ଆବରଣକୁ ଧୀରେ ଧୀରେ ହଟାଇବାକୁ ଲାଗ । ଅନ୍ୟଥା, ପରିଶେଷରେ ଜବରଦସ୍ତ ତୁମ ଠାରୁ ଛଡ଼େଇ ନିଆଯିବ । ଲୋକମାନେ ମୋହ ତ୍ୟାଗ କରିବା ପରିବର୍ତ୍ତେ ମୋହ ପ୍ରତି ଆକୃଷ୍ଟ ହେବାରେ ଲାଗିଛନ୍ତି । ସନ୍ଥଙ୍କ ପାଖକୁ ଯାଇ ଧନସମ୍ପତ୍ତି, ଘରବାଡ଼ି, ଚାକିରୀ-ବ୍ୟବସାୟ କିପରି ବଢ଼ିବ, ସେଥିପାଇଁ ଭିକ୍ଷା କରନ୍ତି କିନ୍ତୁ ଆତ୍ମଜ୍ଞାନ ପାଇଁ ଯାଚନା କରନ୍ତି ନାହିଁ ।

❋ ଶରୀରର ଲାଳନ ପାଳନ କିଛି କମ୍ କଲେ କି କ୍ଷତି ହୋଇଯିବ ? ଶରୀରକୁ ନ ସମ୍ଭାଳି ପାରିଲେ କ'ଣ ଦୁଇ ଦିନରେ ଏହା ଚାଲିଯିବ ? କଦାପି ନୁହେଁ । ଐଶ୍ୱରୀୟ ଭାବରେ ମଜ୍ଜି ରହିଲେ ଶରୀରର ଖାଦ୍ୟପେୟ ପ୍ରାରବ୍ଧ ଅନୁଯାୟୀ ସ୍ୱୟଂଲବ୍ଧ ହେବ । ଈଶ୍ୱରଙ୍କୁ ତ୍ୟାଗ କରି ଶରୀର ପଛରେ ଅଧିକ ସମୟ ଓ ଶକ୍ତି ଲଗାଅ ନାହିଁ । **"ଏହି ଶରୀର ଈଶ୍ୱରଙ୍କ ସନ୍ଦେଶ ଦେବା ପାଇଁ ପ୍ରକଟିତ ହୋଇଛି । ଯେତେବେଳ ଯାଏ ଏହାର କାର୍ଯ୍ୟ ସମାପ୍ତ ହୋଇ ନାହିଁ, ଯେତେବେଳ ଯାଏ ଏହାର ପତନ ହେବ ନାହିଁ ।"**– ଏହା ଭାବନା କରି ସାଧନା, ଧ୍ୟାନ, ଭଜନରେ ମନ ଲଗାଅ । ଶରୀରର ଚିନ୍ତା ଛାଡ଼ । ମରିବାବାଲା ପଲଙ୍କରେ ଶୋଇଥିଲେ ବି ମରିଯାଏ କିନ୍ତୁ ବଞ୍ଚିବାବାଲା ଘୋର ଦୁର୍ଘଟଣାରୁ ମଧ୍ୟ ବର୍ତ୍ତିଯାଏ ।

❋ ସଂସାରୀ ତଥା ଅଜ୍ଞ ବ୍ୟକ୍ତିମାନଙ୍କ ପ୍ରୀତି, ଭକ୍ତି ଏବଂ ସମ୍ମାନରୁ ଦୂରେଇ ରହ । ସେମାନେ କେତେବେଳେ କ'ଣ କରିବେ କିଛି କହି ହେବ ନାହିଁ । ଯିଶୁଙ୍କ ସମ୍ମାନାର୍ଥେ ନଗରରେ ସାଜସଜ୍ଜାର ଆୟୋଜନ କରୁଥିବା ଲୋକମାନେ ହିଁ ପ୍ରେମ ଶିକ୍ଷା ଦାନ କରୁଥିବା ସେହି ଯିଶୁଙ୍କୁ ପରିଶେଷରେ କ୍ରୁଶବିଦ୍ଧ କରିଥିଲେ । ସତ୍ୟ

ଅନୁସନ୍ଧାନରେ ଯେଉଁ ସକ୍ରେଟିସ୍ ନିଜ ଜୀବନକୁ ଉତ୍ସର୍ଗ କରିଦେଇଥିଲେ, ସେହି ସତ୍ୟକୁ ହଜମ କରି ନ ପାରିବା ବ୍ୟକ୍ତିମାନେ ତାଙ୍କୁ ବିଷ ପିଆଇ ଥିଲେ । **ଅହିଂସା ପରମୋଧର୍ମ**ର ଧ୍ୱଜା ଧାରଣ କରି ଆନ୍ଦୋଳନ କରୁଥିବା ଗାନ୍ଧୀଙ୍କ ଉପରେ ତ ପୁଣି ଗୁଳି ବର୍ଷଣ ହୋଇଥିଲା । ଅଜ୍ଞ ବ୍ୟକ୍ତିଙ୍କର ଏତାଦୃଶ କୁକର୍ମରେ ସମ୍ପୂର୍ଣ୍ଣ ମାନବ ଇତିହାସ ଭରପୂର ହୋଇ ରହିଛି ।

❋ ଥରେ ଜଣେ ଯୁବକ ଗୋଟିଏ କୂଅ ଚାନ୍ଦିନୀକୁ ଅପରିଷ୍କାର କରୁଥିଲା, ଜଣେ ବୁଢ଼ୀ ତାକୁ ଦେଖି ପଚାରିଲା : "ବାବୁ ! ତୁ କିଏ ? କେଉଁଠାରୁ ଆସିଛୁ ? ଏସବୁ କ'ଣ କରୁଛୁ ?"

"ମୁଁ ଅମୁକ ଗ୍ରାମରୁ ଆସିଛି । ମୋର ସ୍ତ୍ରୀ ମୋତେ ଛାଡ଼ି ଚାଲି ଯାଇଛି । ତାକୁ ଖୋଜିବା ପାଇଁ ବାହାରିଛି ।"

"ତୋ ସ୍ତ୍ରୀର ନାମ କ'ଣ ?"

"ତା'ର ନାମ ଫଜିତୀ (ବୋକୀ)"

"ବର୍ତ୍ତମାନ ସୁଦ୍ଧା ତାକୁ ପାଇ ନାହୁଁ ?"

"ପାଇ ନାହିଁ ।"

"ପାଇଯିବୁ, ଶୀଘ୍ର ପାଇଯିବୁ । ଚିନ୍ତା କର ନାହିଁ । ତୋର ଆଚରଣ ଏପରି ଯେ ତୁ ଯେଉଁଠି ଯିବୁ ଫଜିତୀ ତୁରନ୍ତ ସେଠାରେ ହାଜର ହୋଇଯିବ ।"

ମୂର୍ଖର ପଛେ ପଛେ ମୂର୍ଖତା ଚାଲିଛି । ନିଜ ଚିତ୍ତରେ ନିର୍ବୋଧତା ଥିବା ଯାଏ ବୋକାମୀ ରହିବ । ଯେଉଁଠାକୁ ଯାଅ ନା କାହିଁକି, ବିଶ୍ୱର ଯେ କୌଣସି କୋଣକୁ ଯାଅ, କି ବୈକୁଣ୍ଠକୁ ଯାଅ, ଯେତେବେଳ ଯାଏ ଚିତ୍ତରେ ଅଜ୍ଞାନ ରହିଛି ସେତେବେଳ ଯାଏ ବୋକାମୀ ରହିବ ହିଁ ରହିବ । ନିଜକୁ ଏହା ଦେଖାଯାଉ କି ଦେଖା ନ ଯାଉ କିନ୍ତୁ ତାର ଉପସ୍ଥିତି ଅବଶ୍ୟମ୍ଭାବୀ ।

ସମସ୍ତ ଅଜ୍ଞାନ ଏବଂ ସମସ୍ତ ଦୁଃଖକୁ ଦୂର କରିବାର ଏକମାତ୍ର ସଠିକ ମାର୍ଗ ହେଲା ଆତ୍ମଜ୍ଞାନ ।

❋ ଭାଗ୍ୟବଶତଃ ବୁଦ୍ଧିମାନ ଲୋକକୁ ଯଦି କୌଣସି ଧକ୍କା ବା ବିପତ୍ତି

ଭୋଗିବାକୁ ହୁଏ ତେବେ ସେ ନଶ୍ୱର ଓ କ୍ଷଣଭଙ୍ଗୁର ବିଷୟ ପଛରେ ଦୌଡ଼ିବା ବନ୍ଦ କରି ଅନନ୍ତତ୍ୱ ଲାଭ କରିବା ପାଇଁ ସମର୍ଥ ହୋଇଥାଏ । କିନ୍ତୁ ବୁଦ୍ଧିହୀନ ବ୍ୟକ୍ତି ବିପତ୍ତିର ସମ୍ମୁଖୀନ ହେଲେ ସେ ଅଧିକ ପାଗଳ ହୋଇ ବସ୍ତୁ ପଛରେ ଦୌଡ଼ିବାକୁ ଲାଗେ ।

❋ ନିର୍ଦ୍ଦୋଷତା, ନିଷ୍କପଟତା ଏବଂ ତ୍ୟାଗ ଯେତେ ବଢ଼େଇ ଚାଲିବେ ସେତିକି ସେତିକି ଶକ୍ତି ଆପଣଙ୍କ ଠାରେ ବଢ଼ି ଚାଲିବ । ଆସକ୍ତି ଏବଂ ଇଚ୍ଛାକୁ ଯେତେ ବଢ଼ାଇବେ ସେତିକି ଅନ୍ତଃସାରଶୂନ୍ୟ ହୋଇ ଦୀନ-ହୀନ ହୋଇ ଯିବେ ।

❋ ଆକାଶର ପକ୍ଷୀମାନଙ୍କ ସହିତ କିଛି ସମ୍ପର୍କ ନାହିଁ । ଆକାଶ ନିର୍ଲେପ ଓ ଅସଙ୍ଗ ଅଟେ ।

❋ ଜୀବନରୂପୀ ନଦୀର ପ୍ରବାହ ଯେପରି ଚାଲିଛି ତାକୁ ଦେଖ । ସେଥିରେ ସୁଖରୂପୀ ଫୁଲ ପ୍ରବାହିତ ହେଉଛି ଏବଂ ଦୁଃଖରୂପୀ କଣ୍ଟା ମଧ୍ୟ ବହି ଚାଲିଛି । ତୁମେ ନଦୀ ତଟରେ ବସିଥିବା ଦ୍ରଷ୍ଟା । ତୁମକୁ ସୁଖ ଦୁଃଖର ସ୍ପର୍ଶ ହେବ କିପରି ?

❋ ଈଶ୍ୱରଙ୍କ ଭଜନ କରିବା ଏବଂ ତାହା ସହିତ ନିଜକୁ ଦେହ ବୋଲି ମାନ୍ୟତା ଦେବା ଠିକ୍ ଗୋଟିଏ ଖୋଳରେ ଦୁଇଟି ଖଣ୍ଡା ରଖିବା ପରି ହେଲା । ଦେହାଧ୍ୟାସ ସର୍ବପାପର ବାପ ଅଟେ । ଦେହାଧ୍ୟାସ ଆସିବା ମାତ୍ରେ ଏଣୁତେଣୁ ଗୁଡ଼ାଏ କର୍ତ୍ତବ୍ୟର ବୋଝ ତୁମ ଉପରେ ମାଡ଼ି ବସିବ ।

❋ ଯାହାର ଜୀବନରେ ଉନ୍ନତିର ଆଶା ନାହିଁ, ସେ ଶବ ତୁଲ୍ୟ ବ୍ୟର୍ଥ ଅଟେ । ଅଜ୍ଞ ହୋଇ ରହିବ ସବୁ ଠାରୁ ବଡ଼ ପାପ । ଅଜ୍ଞ ପୁଣ୍ୟ କଲେ ମଧ୍ୟ ବନ୍ଧନରେ ପଡ଼େ । କିନ୍ତୁ ଜ୍ଞାନୀ ଦ୍ୱାରା ପାପ ହେଲେ ସୁଦ୍ଧା ସେ ନିର୍ଲେପ ରହନ୍ତି, ଦୁଃଖୀ ହୁଅନ୍ତି ନାହିଁ । ହନୁମାନ ଲଙ୍କା ଦହନ କଲେ, ତଥାପି ସେ ଦୋଷୀ ହେଲେ ନାହିଁ । ଅଜ ରାଜା ହଜାର ହଜାର ଗୋ-ଦାନ କଲେ ତଥାପି ତାଙ୍କୁ ଦୋଷ ଲାଗିଲା ଏବଂ ସେ ଅଜଗର ହେଲେ ।

❋ ଆଧ୍ୟାତ୍ମ ମାର୍ଗରେ ଅଗ୍ରସର ହୁଅ । ଡର ନାହିଁ । ଯେତେ ଦିନ ବିତି ଗଲା ସେତିକି ଦୁଃଖ-ସୁଖ ଚାଲିଗଲା । ପ୍ରାରବ୍ଧର ଖାତାରେ ହିସାବ ତୁଟିଗଲା । କେତେ ଯେ

ଶରୀର, କୁଟୁମ୍ବ, ସମ୍ବନ୍ଧ ଏବଂ ସଂସାର ଆସିଲା ଏବଂ ଗଲା, ଏବେ ମୋହ କାହାପାଇଁ ? କାହାକୁ ନେଇ ଚିନ୍ତା । ଆନନ୍ଦରେ ବଞ୍ଚ ଏବଂ ପ୍ରିୟ ପରମାତ୍ମାଙ୍କର ଭଜନ କର ।

⁂ ଯେପରି ବାସନକୁ ପ୍ରତିଦିନ ନ ମାଜିଲେ ସେଥିରେ କଳଙ୍କ ଲାଗିଯାଏ, ସେହିପରି ମନକୁ ପ୍ରତ୍ୟେକ ଦିନ ଆତ୍ମସ୍ଥ ନ କଲେ ମନର ଆସକ୍ତି ବଢ଼ି ଚାଲିବ । ସେତିକି ସାଧନା ପଥ ଲମ୍ବା ହୋଇଯିବ । ଆସକ୍ତିପୂର୍ବକ କାର୍ଯ୍ୟ କଲେ ମନରେ କଳଙ୍କ ଲାଗିଯାଏ । ସେହି କଳଙ୍କକୁ ସଫା କରିବାର ପ୍ରକ୍ରିୟା ହେଲା ଉପାସନା, ଯୋଗ ଏବଂ ଭକ୍ତି । ମୃତ୍ୟୁ ପର୍ଯ୍ୟନ୍ତ ଏହି ପ୍ରକ୍ରିୟାକୁ ଚାଲୁ ରଖିବାକୁ ହେବ । ପ୍ରତିକ୍ଷଣ ଜାଗ୍ରତ ରହିବାକୁ ହେବ । ଅହଂକାର କୃଷ୍ଣସର୍ପ କରି ବିକଟାଳ । ସେ କେତେବେଳେ ପଶି ଆକ୍ରମଣ କରିବ ତାର ସୁରାକ୍ ପାଇବା ଅତି କଠିନ ।

⁂ ଅଜ୍ଞ ହେଉ କି ବିଜ୍ଞ ହୁଅନ୍ତୁ, ସମସ୍ତଙ୍କର ଦେହ ବିଷୟକ ଅଳ୍ପ ବହୁତ ଅହଂକାର ରହେ । ଦେହର କଷ୍ଟ ଉଭୟଙ୍କୁ ହୁଏ । ଜ୍ଞାନୀ ସଙ୍କଳ୍ପ-ବିକଳ୍ପ କରି ଦୁଃଖୀ ହୁଅନ୍ତି ନାହିଁ କିନ୍ତୁ ଅଜ୍ଞ ବିଚରା ଜନ୍ମ-ଜନ୍ମାନ୍ତର ଦୁଃଖ ଭୋଗେ । କାର୍ଯ୍ୟକର, କିନ୍ତୁ ଆନନ୍ଦପୂର୍ବକ, ଏକାଗ୍ର ଚିତ୍ତରେ ଏବଂ ସମତ୍ୱ ବୁଦ୍ଧିରେ କର । ଅର୍ଦ୍ଧଦଗ୍ଧ ମନରେ, ଅଶାନ୍ତ ଚିତ୍ତରେ କର୍ମ କର ନାହିଁ । ଖୁବ୍ ସମତାପୂର୍ବକ କାମ କଲେ ଆସକ୍ତି ହେବ ନାହିଁ ।

⁂ ସଦ୍‌ଗୁରୁଙ୍କ ପ୍ରତି ଅନନ୍ୟ ଭାବ ଜାଗ୍ରତ ହେଲେ ସେ ତୁମର ଜୀବନ ଡ଼ୋରିକୁ ସମ୍ଭାଳି ନେବେ ଏବଂ ଖେଳ ଖେଳିଲା ପରି, ହସ ଆନନ୍ଦରେ ତୁମକୁ ପରମଧାମରେ ଅନାୟାସରେ ପହଞ୍ଚାଇ ଦେବେ ।

⁂ ପର୍ବ ଦିନରେ ଯେଉଁ ଶୁଭ କର୍ମ ସମ୍ପାଦାନ କରାଯାଏ ତାହା ଫଳଦାୟୀ ହୁଏ । ଗୁରୁପୂର୍ଣ୍ଣିମା (ଆଷାଢ଼ ପୂର୍ଣ୍ଣିମା) ଦିନ ଗୁରୁ ପୂଜନର ବଡ଼ ମହିମା ରହିଛି । ଯେ ଗୁରୁଭକ୍ତ ଅଟନ୍ତି, ବ୍ରହ୍ମବେତ୍ତା ସଦ୍‌ଗୁରୁଙ୍କ ଠାରୁ ଯେ ମନ୍ତ୍ରଦୀକ୍ଷା ଗ୍ରହଣ କରିଛନ୍ତି ସେ ଜାଣନ୍ତି ଯେ ଗୁରୁ ପୂର୍ଣ୍ଣିମା ଦିନ ଗୁରୁପୂଜା କରିବା ଦ୍ୱାରା ବର୍ଷ ବ୍ୟାପୀ ସତ୍‌କାର୍ଯ୍ୟ କରିବାର ଫଳ ଲାଭ ହୁଏ । ଯେଉଁମାନେ ସେହି ପବିତ୍ର ଦିବସରେ ଗୁରୁପୂଜନ କରି ପାରନ୍ତି

ନାହିଁ ବା କୌଣସି ଅପରାଧ ହେତୁ ତାଙ୍କ ପୂଜା ସ୍ୱୀକୃତ ହୁଏ ନାହିଁ , ସେମାନଙ୍କର ଅନୁଭବ ହୁଏ ଯେ ସାରା ବର୍ଷ ସେମାନଙ୍କ ଜୀବନ ଅଶାନ୍ତିରେ ବିତି ଯାଇଛି । ସେହି ଦିନ ଯେଉଁମାନେ ଗୁରୁ ପୂଜା କରନ୍ତି, ଯାହାଙ୍କର ପୂଜା ସ୍ୱୀକାର ହୋଇଥାଏ ସେମାନେ ପୂରା ବର୍ଷ ଆନନ୍ଦିତ, ପ୍ରସନ୍ନ ଏବଂ କାର୍ଯ୍ୟରେ ସଫଳ ହୁଅନ୍ତି ।

**ସ୍ୱାସ୍ଥ୍ୟ ନିମନ୍ତେ ମନ୍ତ୍ର :**

**ଅଚ୍ୟୁତାନନ୍ତ ଗୋବିନ୍ଦ ନାମୋଚ୍ଚାରଣ ଭେଷଜାତ୍ ।**
**ନଶ୍ୟନ୍ତି ସକଳା ରୋଗାଃ ସତ୍ୟଂ ସତ୍ୟଂ ବଦାମ୍ୟହମ୍ ॥**

"ହେ ଅଚ୍ୟୁତ ! ହେ ଅନନ୍ତ ! ହେ ଗୋବିନ୍ଦ ! ଏହି ନାମୋଚ୍ଚାରଣ ରୂପୀ ଔଷଧ ଦ୍ୱାରା ସମସ୍ତ ରୋଗ ନଷ୍ଟ ହୋଇଯାଏ, ଏହା ମୁଁ ସତ୍ୟ କହୁଛି... ସତ୍ୟ କହୁଛି । *(ଧନ୍ୱନ୍ତରି)*

## ପ୍ରାର୍ଥନା

ଶ୍ରୀ ଯୋଗ ବେଦାନ୍ତ ସେବା ସମିତି, ଅହମଦାବାଦଙ୍କ ଦ୍ୱାରା ପ୍ରକାଶିତ ହିନ୍ଦୀ ପୁସ୍ତିକା '**ଇଷ୍ଟସିଦ୍ଧି**'ର ସରଳ ଓଡ଼ିଆ ଭାଷାନ୍ତର ଏହି ପୁସ୍ତିକାଟି ପୂଜ୍ୟ ଗୁରୁଦେବଙ୍କ କରକମଳରେ ଅର୍ପଣ କରାଯାଇଅଛି । ଭାଷାନ୍ତର ସମୟରେ ଯଦି କୌଣସି ତ୍ରୁଟି ରହିଯାଇଥାଏ, ତେବେ ଆବଶ୍ୟକୀୟ ସଂଶୋଧନ ନିମନ୍ତେ ବିନମ୍ର ନିବେଦନ ।

**ଜ୍ଞାନଗଙ୍ଗା**

**ଲକ୍ଷ୍ମୀବଜାର, ଅନୁଗୁଳ, ଫୋନ: (୦୬୭୬୪) ୨୩୦୫୨୧, ୨୩୧୧୦୮**

## ସନ୍ଥ ଶ୍ରୀ ଆସାରାମଜୀ ଆଶ୍ରମ, ଅହମଦାବାଦରୁ ପ୍ରକାଶିତ ହିନ୍ଦୀ ସତ୍-ସାହିତ୍ୟରୁ ଓଡ଼ିଆରେ ଅନୁବାଦ କରାଯାଇଥିବା ପୁସ୍ତକର ବିବରଣୀ

| | | | |
|---|---|---|---|
| ୧) ଯୌବନ ସୁରକ୍ଷା | ... ୪.୦୦ | ୨୨) ବାଲସଂସ୍କାର | ... ୬.୦୦ |
| ୨) ମହାନ ନାରୀ | ... ୪.୦୦ | ୨୩) ପ୍ରଭୁ ପରମ ପ୍ରକାଶ... | ... ୩.୦୦ |
| ୩) ଈଶ୍ୱରଙ୍କ ଅଭିମୁଖେ | ... ୪.୦୦ | ୨୪) ଗୁରୁ ଆରାଧନାବଳୀ | ... ୨.୫୦ |
| ୪) ଜୀବନ ରସାୟନ | ... ୪.୦୦ | ୨୫) ନିର୍ଭୟ ନାଦ | ... ୨.୫୦ |
| ୫) ଇଷ୍ଟସିଦ୍ଧି | ... ୪.୦୦ | ୨୬) ଶ୍ରାଦ୍ଧ ମହିମା | ... ୩.୦୦ |
| ୬) ଶ୍ରୀ ଗୁରୁଗୀତା | ... ୫.୦୦ | ୨୭) ସଂସ୍କାର ସିଞ୍ଚନ | ... ୨.୦୦ |
| ୭) ତୁ ଗୋଲାପ ହୋଇ ମହକ | ... ୪.୦୦ | ୨୮) ଆମର ଆଦର୍ଶ | ... ୬.୦୦ |
| ୮) ଯୋଗଯାତ୍ରା-୩ | ... ୨.୦୦ | ୨୯) ଯିଏ ଜାଗ୍ରତ ରହେ... | ... ୨.୦୦ |
| ୯) ଯୋଗଯାତ୍ରା-୪ | ... ୩.୦୦ | ୩୦) ପଞ୍ଚାମୃତ | ...୨୦.୦୦ |
| ୧୦) ଯୋଗାସନ | ... ୩.୦୦ | ୩୧) ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ | ... ୪.୦୦ |
| ୧୧) ପୁରୁଷାର୍ଥ ପରମ ଦେବ | ... ୨.୫୦ | ୩୨) ଭଗବନ୍ନାମ ଜପ ମହିମା... | ୫.୦୦ |
| ୧୨) ନିଶା ପ୍ରତି ସାବଧାନ | ... ୨.୫୦ | ୩୩) ଯୌବନ ସୁରକ୍ଷା - ୨ | ... ୩.୦୦ |
| ୧୩) ଜୀବନ ଚରିତ | ... ୨.୦୦ | ୩୪) ଆରୋଗ୍ୟନିଧି | ...୧୭.୦୦ |
| ୧୪) ମନକୁ ଶିକ୍ଷା | ... ୨.୦୦ | ୩୫) ଗୁରୁଭକ୍ତିଯୋଗ | ...୧୦.୦୦ |
| ୧୫) ସଦା ଦିବାଲୀ | ... ୨.୦୦ | ୩୬) ପକେଟ ଗୁରୁଗୀତା | ... ୨.୫୦ |
| ୧୬) ପ୍ରସାଦ | ... ୨.୦୦ | ୩୭) ଜୀବନୋପଯୋଗୀ ଚାବିକାଠି | ... ୨.୦୦ |
| ୧୭) ମଙ୍ଗଳମୟ ଜୀବନ... | ... ୨.୦୦ | ୩୮) ପରମ ତପ | ... ୫.୦୦ |
| ୧୮) ଯୁବାଧନ ସୁରକ୍ଷା | ... ୭.୫୦ | ୩୯) ଏକାଦଶୀ ବ୍ରତ କଥା | ... ୫.୦୦ |
| ୧୯) ଶ୍ରୀ ଆସାରାମାୟଣ... | ... ୧.୦୦ | ୪୦) କର୍ମର ଅକାଟ୍ୟ ସିଦ୍ଧାନ୍ତ | ... ୫.୦୦ |
| ୨୦) ମଧୁର ବ୍ୟବହାର | ... ୧.୦୦ | ୪୧) ସଂସ୍କାର ଦର୍ଶନ | ...୨୫.୦୦ |
| ୨୧) ଶ୍ରୀମଦ୍ ଭଗବଦ୍ ଗୀତା | ...୨୦.୦୦ | | |

ପରମ ପୂଜ୍ୟ ସନ୍ତ ଶ୍ରୀ ଆସାରାମଜୀ ବାପୁଙ୍କର ଅମୃତବାଣୀରୁ ପ୍ରସ୍ତୁତ ସତ୍-ସାହିତ୍ୟ, ସିଡି, କ୍ୟାସେଟ, ଆଶ୍ରମ ପ୍ରସ୍ତୁତ ଔଷଧ ଏବଂ ଅଗରବତୀ ଆଦିର ପ୍ରାପ୍ତି ସ୍ଥାନ :

# GYAN GANGA

**LAXMI BAZAR, ANGUL (ORISSA) Ph : 231108, 230521, 231928**

**BHUBANESWAR** : Ph. : 9338214689, (ii) 2470465, (iii) 2541573, (iv) (0674) 2531313, (vi) 3097256, (vii) 9437023295,. **BERHAMPUR** : (i)(0680) 2216032, (ii) 2224303, (iii) 2260611. **BALASORE** : (06782) 250127, (ii) 266595. **BARIPADA** : (06792) 252757. **BHADRAK** : 06784250495. **BANKI (CUTTACK)** : Ph. : (0671) 2381767. **BHUBAN** : (06769) 272394. **BELPAHAR** : 06645-251560. **BRAJARAJ NAGAR** : 06645-242751. **BANAIGORH (SUNDARGARH)** :06622-244229. **BARGARH** :(06646) 230001. **BALANGIR** : (i) (06652) 233677. (iii)232287, **BHAWANIPATNA**: (i) 06670-231222, 9437733131. (ii) 233269. **BALIGUDA (KANDHAMALA)** : 06846 - 243588. **BADMAL** : 06655 - 250765. **CUTTACK** : (i) (0671) 2631197 (ii) 2603915, 2603348 (iii) 2648660, (iv) 2429598, (v) 2621698, (vi) 9337268388. **CHANDOL (KENDRAPADA)** :(06727) 268154. **CHOUDWAR** : (0671) 2493071. **CHANDBALI (BHADRAK)**; 06786-221827. **DHENKANAL**:(06762) 226088. **DEOGARH** : 9437559109, **HINJILICUT** : 06811-280409. **JAJPUR ROAD** : (06726) 224746, **JAJPUR TOWN** : (06728) 223916. **JASHIPUR** : 9437177259. **JAMUNKIRA (SAMBALPUR)** : 06649-234209. **JEYPORE** :9437212728. **JHARUGUDA** : (i) 06645-273159, (ii) 94373933414. **KANTABANJI (BALANGIR)** : (i) 06657-221424, **KEONJHAR** : (i) 06766-255554. (ii) (Mayurgadia), 9437324178. **KESHRAPALLI ASHRAM (GANJAM)** : 9327382493. **KHAMAR** : (06765) 278184. **KUCHINDA** :(06642) 220588, (i) 266508. **KHURDHA** :06755-329970, **KORAPUT** : (i) 06852-250674. **LADUGAON** : 06673-254172. **MOTTO (CHANDBALI)** : Ph. : 956786-221827, **NALCO NAGAR** : (i) (06764) 221875, (ii) 221815. **PURI** : (i)(06752) 232421 (R) (ii) 225838, (iii) 231471, (iv) 232339. **PALALAHADA** : 9437382206. **PHULABANI** : 9437075507. **PARADIP** : 9937464854 , **PATTAMUNDEI** : 9861324613, **PADAMPUR** : 06683-223365. **ROURKELA** : (i) 0661-2471027 (ii) 0661-2476431 (iii) 2480352 (iv) 2513180 (v)\ 09337848047. **RAIRANGPUR** :(06794) 222885. **RAIRAKHOL** :06644-253424. **RAIGADA** : 06856 - 223259,(ii) 222537. **SAMBALPUR** : (i) 0663- 2402467. (ii)2521578. (iii)2410805. **SUNDARGARH** : (i) 06622-275031 (ii) 273261(iii) 275425 (iv) 06622273824. **SOUTH BALANDA (TALCHER)** : (06764) 260190. **SAINKULA (MAYURBHANJ)** : (06793) 212964. **TITLAGORH** : (i) 06655220617, (ii) 06655221310, (iii) 9437210271 **TUSHRA (BALANGIR)** : 06652-256164, **UDLA (MAYURBHANJ)** : (06792) 256175. **TATANAGAR** : (0657) 2432257.



# ଜୀବନର ପୂର୍ଣ୍ଣତା

ସ୍ଥୂଳ ଶରୀରରେ ଶୁଭାଶୁଭ କର୍ମ ହେତୁ ପ୍ରାଣୀ ଥକି ଯାଏ । ଚିନ୍ତନ ଜଗତରେ ସୂକ୍ଷ୍ମ ଶରୀରରେ ପ୍ରବେଶ କରେ । ସ୍ଥୂଳ ଶରୀରର କ୍ରିୟା ଅପେକ୍ଷା ଚିନ୍ତନରେ କମ୍ ପରିଶ୍ରମ ହୁଏ । କିଛି ବିଶ୍ରାନ୍ତି ଏବଂ କିଛି ବ୍ୟାପକତା ଲାଭ ହୁଏ । କିନ୍ତୁ ଏହିଠାରେ ସୁଦ୍ଧା ସେ କ୍ଲାନ୍ତି ପାଏ । ପୁଣି ଜୀବ କାରଣ ଶରୀରରେ ପ୍ରବେଶ କରେ । ନିଦ୍ରା ବା ସମାଧିର ଆଶ୍ରୟ ନିଏ । ସ୍ଥୂଳ କ୍ରିୟା ଏବଂ ସୂକ୍ଷ୍ମ ଚିନ୍ତନ ଅପେକ୍ଷା କାରଣ ଶରୀରରେ ବିଶେଷ ଆରାମ ମିଳେ । ଜୀବ ନିଦ୍ରା ମଗ୍ନ ହୁଏ, ତନ-ମନର କ୍ଲାନ୍ତି ଦୂର ହେବା ମାତ୍ରେ ମୁଁ କିଏ, ତାର ପରିଚୟ ପାଇବାର ସମର୍ଥ ହୁଏ । ଅଶୁଭ ଚିନ୍ତନ ତ୍ୟାଗ କରି ଶୁଭ ଚିନ୍ତନ କଲେ ଚିନ୍ତନ ରହିତ ଦଶା ଲାଭ କରିବାରେ ସାମର୍ଥ୍ୟ ଆସେ । ଅଶୁଭ ପ୍ରବୃତ୍ତିରୁ ମୁକ୍ତ ହୋଇ ଶୁଭ ପ୍ରବୃତ୍ତିରେ ମନୋନିବେଶ ହୁଏ । ସେ ସମସ୍ତ ପ୍ରବୃତ୍ତିରୁ ପାର ହେବାର ସାମର୍ଥ୍ୟ ଅର୍ଜନ କରେ ।

ଏହିପରି ତିନି ଅବସ୍ଥାର ସଦୁପଯୋଗ କରି ଅବସ୍ଥା ତ୍ରୟରୁ ପାର ହେବାକୁ ପଡ଼େ । ସ୍ଥୂଳ-ସୂକ୍ଷ୍ମ-କାରଣ ଏ ସବୁର ଯେଉଁ ଆଧାର ସ୍ୱୟଂ ମୁଁ ସତ୍ତା, ନିଜ ଆତ୍ମା, ପରମାତ୍ମା, ତାହାହିଁ ପୂର୍ଣ୍ଣ ଆନନ୍ଦ, ପୂର୍ଣ୍ଣ ପ୍ରେମ, ପୂର୍ଣ୍ଣ ବିଶ୍ରାନ୍ତି ଏବଂ ପୂର୍ଣ୍ଣ ଜୀବନ ଅଟେ ।

- ପୂଜ୍ୟପାଦ ସନ୍ତ ଶ୍ରୀ ଆସାରାମଜୀ ବାପୁ